# ବାହା ବାଜାରେ ଜ୍ୱାଇଁ କିଣେ ହଜାରେ



# ବାହ୍ୱା ବଜାରେ
# ଡ୍ରାଇଁ କିଲୋ ହଜାରେ



ଲେଖକ—ଭଗୀରଥି ଦାସ

—ପ୍ରକାଶକ—

ରଶ୍ମି ପ୍ରକାଶନୀ

ପ୍ରକାଶକ ଓ ପୁସ୍ତକ ବିକ୍ରେତା

ବାଦାମବାଡ଼ି, କଟକ—୧୨

# ଅଙ୍ଗରାଗ

ବାହା ବଜାରେ କ୍ୱାଇଁ କଲେ ହଜାରେ

*

ଆଶୀର୍ବାଦ— ଶାନ୍ତ ଷାନ୍ତ୍ୟ ସ୍ଥିତଃ ଷୀଣା କ୍ଷମାରୂପା ଷିତୀଶ୍ୱରୀ
ଲଜ୍ଜା ତୁଷ୍ଟାଃ ସ୍ତୁତ ସ୍ତୁତ୍ୟା ଭବାନୀ ଭବମୋହିନୀ ।

*

ଲେଖକ—ଶ୍ରୀ ଭଗୀରଥ ଦାସ ( ଚଳଚିତ୍ର କାହାଣୀକାର )
ପାଟଣୀ ଗାଁ, ଜଗତ୍‌ସିଂହପୁର, କଟକ

*

ପ୍ରଚ୍ଛଦପଟ୍ଟ ଶିଳ୍ପୀ—ଗୋବିନ୍ଦ ଚନ୍ଦ୍ର ମହାନ୍ତି

*

ନୂତନ ମୁଦ୍ରଣ—ଗଣେଶ ପୂଜା

*

ପ୍ରକାଶକ—ରଶ୍ମି ପ୍ରକାଶନୀ
ବାଦାମବାଡ଼ି, ଉ: ପ୍ରା ସ୍କୁଲ ସାମନା କଟକ-୧୨

*

ମୁଦ୍ରଣ—ଲିପି ଓ ଲେଖା
କଲ୍ୟାଣୀନଗର, କଟକ-୧୩

*

ମୂଲ୍ୟ—ପାଞ୍ଚଟଙ୍କା ମାତ୍ର

ନାଟ୍ୟକାର **ଭଗୀରଥି ଦାସଙ୍କ** ଲେଖନୀରୁ ଜନ୍ମ ନେଇଥିବା

କେତେଖଣ୍ଡି ଶ୍ରେଷ୍ଠ ନାଟକ—

ପର ଝିଅ ଘର ଖୁଙ୍ଗେନା

"ଭିନ୍ନ ଏକ ପୃଥିବୀ"

"ମୋ ସଂସାର ଭାସିଗଲା"

"ରକ୍ତାକ୍ତ ତରବାରୀ"

"ନର୍କ ଡାକେ"

ପ୍ରିୟା–ପ୍ରୀତି–ପ୍ରିୟତମା—

"ଷୋଳକଳା ବୁଲେଟ"

"ପ୍ରତିହିଂସାର ଆର୍ତ୍ତନାଦ"

"କାନ୍ଦୁଛି କଙ୍କାଳ"

"ଲାଞ୍ଚଖୋର ଜାନୁଆର"

ଏବଂ ଆହୁରି ଅନେକ···

ପ୍ରାପ୍ତିସ୍ଥାନ,

ରଶ୍ମି ପ୍ରକାଶନୀ

ବାଦାମବାଡ଼ି, କଟକ-୨

# ମାଅ ପଦେ କଥା

ମା-ଭଉଣୀଙ୍କୁ କହୁଛି···

ଭାଇବନ୍ଧୁ ଏବଂ ସହଧର୍ମିମାନଙ୍କୁ କହୁଛି·····ହେ ମମତାର ସାଗର-ମା !

ହେ ସ୍ନେହ ପ୍ରେମ ମମତା ଏବଂ ମୁକ୍ତିର ମହିମାମୟୀ ! ତୁମେ ଏକାଧାରରେ ଜନନୀ, ଭଗିନୀ, ଜାୟା ଓ କନ୍ୟା ! ତୁମେ ସୃଷ୍ଟି ପାଳନ କାରିଣୀ-ସଂହାରିଣୀ ଏବଂ ସର୍ବସହା ବସୁନ୍ଧରା ।

ତୁମେ ସମଗ୍ର ବିଶ୍ୱର ଜନନୀ !

ଯେଉଁମାନେ ଯୌତୁକ ଦ୍ୱାରା ତୁମର ମାନ ନିର୍ଦ୍ଧାରଣ କରୁଛନ୍ତି ସେମାନଙ୍କୁ ତୁମେ ସତ୍‌ମାର୍ଗ ଦିଅ ମା ! ସେମାନେ ଅର୍ଥ ସ୍ୱାର୍ଥ ଓ କାମନାର ମାତାଲ ହୋଇ ଯାଉଛନ୍ତି । ଯୌତୁକ ବ୍ୟାଧି ସେମାନଙ୍କୁ ଧ୍ୱଂସ ପଥକୁ ଟାଣି ନେଉଛି ! ତୁମେ ସେମାନଙ୍କୁ ଏମାନଙ୍କୁ ଆମ୍ଭମାନଙ୍କୁ ଏବଂ ପରବର୍ତ୍ତୀ ଦାୟାଦମାନଙ୍କୁ ଆଶୀର୍ବାଦ କର ମା—ଆମେ ସମସ୍ତେ ଯେପରି ତୁମର ପୂଜା କରିବାକୁ ସୁଯୋଗ ଓ ସତ୍ ପରାମର୍ଶ ପାଉ ।

(ଏଥିରେ ଲିଖିତ କାହାଣୀ, ଚରିତ୍ର, ନାମ ଠିକଣା ଏବଂ ସମସ୍ତ ଘଟଣା ମୋ କଳ୍ପନାରୁ ଗୃହୀତ)

**ଭଗୀରଥି ଦାସ**

୧୯୮୪—ରାକ୍ଷୀପୂର୍ଣ୍ଣିମା

# ମା' ଶାରଳାଙ୍କ ପାଦ ପଦ୍ମରେ.....



ଆଜକୁ ଠିକ୍ ଅଠର ବର୍ଷ ତଳେ । ସେଦିନ ମୁଁ ବନ୍ଧୁକ ଧରି ଶିକାରକୁ ବାହାରି ଗଲି ଭୋର ସକାଳୁ । କାମ କିଛି ନ ଥାଏ । ବାପା କହିଲେ ଶିକାରକୁ ଗଲେ କିଛି ତ ରୋଜଗାର ହେବ । ଘରେ ବସିଲେ କିଏ ମୋଫତ୍‌ରେ ତ ଦେଇଯିବ ନାହିଁ । କିଛି ତ କିଛି ନହେଲେ ମୃଗ କି ଠେକୁଆ ତ ମିଳିଯିବ । ଦେଖେ ଯଦି ଭାଗ୍ୟରେ ଜୁଟିଯାଏ ତରକାରୀ ଖର୍ଚ୍ଚ ଚଳିଯିବ ।

ବାପାଙ୍କ କଥା ମୁଁ ତଳେ ପକାଏ ନାହିଁ ।

ବାହାରିଗଲି ବଣକୁ । ସାଥୀରେ କେହି ନଥିଲେ ସତ, ଥିଲା ମୋର ଭଲୁଆ କୁକୁର । ଭଲୁଆ ପଶୁ ହେଲେ କ'ଣ ହେଲା ଭାରି ବୁଦ୍ଧିଆ । ବାଘର ଗନ୍ଧ ବାରିବାରେ ସେ ଧୂରନ୍ଧର । ମୋ ବୋଲ ମାନେ ।

ତାକୁ ନ ନେଲେ ମୋ ମନ ମାନେ ନାହିଁ ।

ବାପା ପଲ୍ଲୀର ଗୌନ୍ତିଆ । ଯାହା କହିବ ସାରା ପଲ୍ଲୀର ଲୋକେ ମାନନ୍ତି । ସମସ୍ତେ ତାଙ୍କୁ ଠାକୁର ମନେ କରିଥାନ୍ତି ।

ତାଙ୍କର ପୁଅ ମୁଁ । ଲୋକେ ମୋତେ ଖାତିରି କରନ୍ତି । ମୁଁ ବଣକୁ ଗଲେ ମୋ ସାଥିରେ ଦେଢ଼ଶ୍ଚା ପୁଞ୍ଜାଏ ନିଶ୍ଚେ ଗୋଡାଇ ଥିବେ । ସେଦିନ ଆଖୁ କାଟିବାକୁ ସମସ୍ତେ ଯାଇଥିଲେ । ଏକା ଏକା ବାହାରିଗଲି ସାତ କୋଶିଆ ବଣକୁ । ବୁଲି ବୁଲି ଶିକାର ପାଇଲି ନାହିଁ ।

ଝରଣା ତଳେ ଛପି ଗଲି ।

ଭଲୁଆ ମୋ ପାଖରେ ଠିଆହୋଇ ଧକାଉ ଥାଏ । ଦିନ ଅଧ ହେଲାଣି । ସେତେବେଳକୁ ଖରା ବି ଣଟାହଲା ଣି । ମତେ ଭରି ଭୋକ ହେଉଥାଏ । ଏତିକିବେଳେ ଶିଙ୍ଗାକଟାଏ ପାଣି ଖାଇବାକୁ ଆସିଲା । ସୁଯୋଗ ଦେଖି ଗୁଳି ଛାଡ଼ିଦେଲି । ଶିଙ୍ଗାକଟାଏ ରଡ ଛାଡ଼ି ଗଡ ପଡ଼ିଲା । ଧାଇଁଗଲି, ଦେଖିଲି ଜନ୍ତୁଟା ମରି ଯାଇଛି । ତାକୁ ଏକା ବୋହିନେବା ମୋ ଦ୍ୱାରା ହେଲା ନାହିଁ । ଦେଖିଲେ ସିନା କାହାକୁ ଡ଼ାକନ୍ତି । କାହାରିକୁ ନ ପାଇ ସେହି ଝରଣା ତଳେ ବସି ରହିଲି । ମୋ ଫେରିବା ଡେରି ଦେଖି ବାପା ଡ଼ାକି ଡ଼ାକି ବଣ ମଝିରେ ଚାଲିଛନ୍ତି । ତାଙ୍କ ପାଟିଶୁଣି ଓଲଟା ଜବାବ ଦେଲି । ବାପା ମୋ ପାଖରେ ପହଞ୍ଚିଲେ । ଦେଖିଲି କୋଳରେ ଟିକି ଝିଅଟାଏ ।

— ବାପା····ସେ କାହାର ପିଲା ?

ବାପା ମୋ କଥା ଶୁଣି ହସିଲେ । କହିଲେ ମୁଁ ଧରିଛି ତ····ଇଏ ମୋ ପିଲା । ତୋର ଗୋଟାଏ ଟିକି ଭଉଣୀ ।

ମୁଁ ବୁଝି ପାରିଲି ନାହିଁ ।

ବାପା କହିଲେ, ଜଙ୍ଗଲ ମଝିରେ ଯେଉଁ ବନଦୁର୍ଗା ମନ୍ଦିର ଅଛି, ଛୁଆଟି ସେଇଠି ଶୋଇଥିଲା । ପାଖରେ କେହି

ନ ଥିଲେ । ଛୁଆଟା କାନ୍ଦୁଥିଲା । ଦେଖିଲି ତା ପାଖରେ ଗୋଟାଏ ବାକ୍ସ ରହିଛି । ବାକ୍ସ ଭିତର ଦେଖିବାକୁ ଚାହିଁଲି ଯେ ତାଲା ପଡ଼ିଛି । ବାକ୍ସ ଉପରେ ଏଇ ଚିଠିଟି ଥିଲା । ମୁଁ ପଢ଼ିଛି ଯେ, ପଢ଼ି ଶୁଣାଇବି । ଶେଷରେ ଛୁଆଟିକୁ ନେଇ ଚାଲି ଆସିଲି ।

ମୁଁ ଟିକି ଝିଅଟିକୁ ଦେଖି ଆନନ୍ଦ ହେଲି । ତାପରେ ଆମେ ଶିକାର ଧରି ପଲ୍ଲୀକୁ ଫେରିଲୁ । ପଲ୍ଲୀଲୋକେ ଶଙ୍ଖୋଳିବା ପାଇଁ ଆମ ଘର ଚାରିପଟେ ଘେରିଗଲେ । କିଏ କହିଲା ଆମ ଗୌନ୍ତିଆ କନ୍ୟାଟିଏ ପାଇଛି । ଆଉ କିଏ କହିଲା, ଠାକୁରେ କନ୍ୟାଦାନ କରିଛନ୍ତି । ବାପା ଗରଧାରେ ସେ ଝିଅର ନାଁ ଦେଲେ କୁସୁମା ।

ଯୁବତୀ କୁସୁମା ଧର୍ମବୀର ଠାରୁ ନିଜ ଜନ୍ମ ଇତିହାସ ଶୁଣି ଆଶ୍ଚର୍ଯ୍ୟରେ କହିଲା, ତୁ ସତ କହୁଛୁ ଭାଇ ! ମୁଁ ବାପାର ଝିଅ ନୁହଁ ଆଉ କାହାର ! ଧର୍ମବୀର କୁସୁମା ପିଠି ଥାପୁଡ଼ାଇ ହସି ହସି କହିଲା ତୁ ମୋ ବାପର ଝିଅ । କିଏ ତୋର ବାପା-ମା' ଆମେ ଜାଣିନାହୁଁ । ଜଗତ ଜାଣେ ତୁ ଠାକୁର ଗୌନ୍ତିଆଙ୍କ ଝିଅ । ପଚ୍ଛ କଥା ନେଇ ମନ ଊଣା କରୁଛୁ କାହିଁକି । ସତ କହିଲୁ ମୋ ବାପାଙ୍କୁ ତୁ ଘୃଣା କରୁଛୁ ?

—ସେପରି କହନା ଭାଇ ! ମୁଁ ଖାଲି ଭାବୁଛି····

—ଜାଣେ ଲୋ କୁସୁମା···ଜାଣେ । ତୋତେ ଆଶ୍ଚର୍ଯ୍ୟ ଲାଗୁଥିବ । ଭାବୁଥିବୁ କିଏ ତୋର ବାପା-ବୋଉ ।

—ହଁ ।

ବାପା ମତେ ମନା କରିଥିଲେ, ମୁଁ କହିଦେଲି । ଜାଣିଲେ ମାଡ଼ ଦେବେ । ରାଗ କରି କେତେ ଟାଣ କଥା କହିବେ ।

ତୋତେ ମୋ ରାଣଟି....ଏ କଥା ବାପା ନ ଜାଣନ୍ତୁ ଯେପରି । ତୋ ନୂଆବୋଉ ଜାଣିଲେ ଆହୁରି ଅସୁବିଧା ହେବ ସତ କହିଲୁ, କାହାରିକୁ କହିବୁ ନାହିଁ ତ ?

—ନା ।

କୁସୁମା !

—କ'ଣ ।

—ମୁହଁଟା ଫୁଲାଇ ଦେଲୁ କାହିଁକି ?

କାହିଁ, ନାହିଁ ତ ।

—ଏହିତ ଦେଖୁଛି ।

—ଯାଃ ! ମିଛୁଆ !

—ସତେଲୋ କୁସୁମା ! ଥରେ ଥରେ ତୋ କଥା ଭାବିଲେ ମୋ ମନଟା ଦୁଃଖୀ ହୋଇଯାଏ ।

—କାହିଁକି ?

—ତୋ ବାହାଘର ଚିନ୍ତାରେ ।

—ଆଉ କିଏ କହିବ ।

—ବାପା !

—ବାପା କ'ଣ କହନ୍ତି ଜାଣିଛୁ ?

—କ'ଣ ?

ବାପାଙ୍କ ଇଚ୍ଛା ତୋତେ ଭଦ୍ରଲୋକ ଘରେ ବାହାଦେବେ । ତୁ ଯାହାର ହାତ ଧରିବୁ ସିଏ ବହୁତ ପାଠ ପଢ଼ିଥିବ । ସୁନ୍ଦର ହୋଇଥିବ । ବଡଲୋକର ପୁଅ ହୋଇଥିବ । ଏ ବଣୁଆ ଘରେ ତୋର ବାହାଘର ହେବ ନାହିଁ ।

କୁସୁମା କହିଲା, ତୁ କ୍ଷେତକୁ ଯିବୁ ନାହିଁ ପରା ! ଏମିତି ଗପୁଥିବୁ, ଦିନ କେତେ ହେଲାଣି ଦେଖୁଚୁଟି ।

ଧର୍ମବୀର ଜାଣିପାରିଲା କୁସୁମାର ମନଟି ହଠାତ୍ ବଦଳି ଯାଇଛି । ତା ମୁହଁରେ ଚିନ୍ତାର ଘନଘଟା । ସେ ନିଶ୍ଚେ କିଛି ଭାବୁଛି । ଏତେଦିନ ହେଲା ଯାହା ଗୋପନ ରଖିଥିଲା ଆଜି ପ୍ରକାଶ କରି ଦେଇ ଥିବାରୁ ଧର୍ମବୀର ଆଶଙ୍କା କରୁଥିଲା । ଯଦି କୁସୁମା କାନ୍ଦେ କି ତା ବାପ କିଏ ଜାଣିବାକୁ ଚାହେଁ, ତାହେଲେ ଅସୁବିଧା । ବାପା ପ୍ରଚଣ୍ଡ ରାଗିଲୋକ । ଏ ବୟସ ରେ ମଧ୍ୟ ମାଡ଼ ଦେବାକୁ ପଛାଇବେ ନାହିଁ ।

—ଭାଇ !

—କ'ଣ କି ।

—ସେ ଯେଉଁ ଚିଠିଥିଲା ସେଥିରେ କଣ ଲେଖା ହୋଇଥିଲା ?

—ବାପା ଜାଣିଥିବେ ।

—ଆଉ ସେ ବାକ୍ସରେ କ'ଣ ଥିଲା ?

—ମୁଁ ଜାଣେନାହିଁ ।

—ତୁ ମିଛ କହୁଛୁ ।

—ନାଇଁରେ ବୁଢ଼ୀ···ମିଛ କହିବି କାହିଁକି ?

—କୁସୁମା ମୁହଁ ଫୁଲେଇ କହିଲା, ମିଛୁଆ !

ଧର୍ମବୀର କୁସୁମା ମୁଣ୍ଡରେ ହାତ ବୁଲାଇ ନେଇ କହିଲା ତୋତେ ମିଛ କହିବାକୁ ମୋର ସାହସ ନାହିଁ । ଏଇ କଥା ତୋତେ ଜଣାଇ ଦେଇଛି । ବାପା ଜାଣିଲେ ମୋ ଭାଗ୍ୟରେ ଖାଲି ମାଡ଼ ବସିବ । କିଛି ଦିନ ଯାଉ ବାପା ତୋତେ ଆପେ

କହିଦେବେ । ଆଜିକାଲି ମଧ୍ୟରେ ତାଙ୍କୁ ଯଦି ପଚାରିବୁ ତେବେ ଖରାପ ହେବ । ତାଙ୍କ କଥାତ ତୁ ଜାଣିଛୁ । ତୋତେ ମୋ ରାଣ ଲୋ କୁସୁମା....ମୋ ଜୀବନ ତୋ ହାତରେ । କ୍ଷେତକୁ ଯାଉଛି । ତୁ ଘରକୁ ଯାଆ, ମୁଁ ଚାଲିଲି ।

କ୍ଷେତକୁ ଚାଲିଲା ଧର୍ମବୀର । କୁସୁମା ଖଣ୍ଡେ ପଥର ଉପରେ ବସି ପଡ଼ିଲା । ଏତେଦିନ ପରେ ଶୁଣା କଥା ସତ–ହେଲା । କେତେଲୋକ କେତେ ପ୍ରକାର କହୁଥିଲେ । ଆଜି ଭାଇଠାରୁ ସତ କଥାଟା ଜଣାଗଲା ।

ଠାକୁର ଗୌନ୍ତିଆ ମୋ ବାପା ନୁହେଁ ।
ଫୁଲରାଣୀ ମୋ ସାନ ଭଉଣୀ ନୁହେଁ ।
ମରି ଯାଇଥିବା ମା' ମୋ ମା' ନୁହେଁ ।
ଧର୍ମବୀର ମଧ୍ୟ ମୋ ଭାଇ ନୁହେଁ ।

ତେବେ ମୋର ଜନ୍ମଦାତା କିଏ ? କିଏ ମୋର ମାଆ ? କୁସୁମାର ସୁନ୍ଦର ଆଖି ଦୁଇଟିରୁ ଲୁହ ଝରିଗଲା ।

ମନରୁ ସବୁ ଆନନ୍ଦ ଲିଭିଗଲା । ହୃଦୟରେ ଆଲୋଡ଼ନ ସୃଷ୍ଟି ହେଲା ।ଆଗ୍ରହ ବଢ଼ିଗଲା ଖୋଜି ପାଇବାକୁ ବାପା ମାଆଙ୍କୁ । ଉତ୍କଣ୍ଠା ଆସିଲା ଦେଖିବାକୁ ବାକ୍ସଟି ଭିତରେ କ'ଣ ଅଛି । ଚିଠିଟିରେ କ'ଣ ଲେଖା ଅଛି ।

କାହାକୁ ପଚାରିବ ।
ବାପାକୁ ପଚାରିଲେ ଧରାପଡ଼ିଯିବେ ଭାଇ ।

ଆଉ କାହାରିକୁ କହିବେ ନାହିଁ । କଥାଟା ପ୍ରକାଶ ପାଇ ଗଲେ ନାନା ଅସୁବିଧା ଦେଖାଦେବ । ବାପା ମନରେ ଦୁଃଖୀ ହେବ । ତାଙ୍କର ସ୍ନେହ ମମତା ଅମାପ । ଫୁଲରାଣୀଠାରୁ ବାପା ଅଧିକ ସ୍ନେହ ଚକ୍ଷୁରେ ଦେଖନ୍ତି ତାକୁ । ଆଉ ଘରକୁ ଫେରିବାକୁ ଇଚ୍ଛା ହେଉ ନାହିଁ ।

ମନଟା ଅବାଧ୍ୟ ।

ଦୀର୍ଘଦିନ ହେଲା ଏଇ ବଣଜଙ୍ଗଲର ଉପକଣ୍ଠରେ କୁସୁମା ନାଚି ଖେଳି ମଣିଷ ହୋଇଛି । ବଣର ଗଛ, ଲତା ପାହାଡ ଓ ମୃଗ ମୟୂର ସହିତ କଥାକହି ଆସିଛି । ସହରୀ ସଭ୍ୟତା ତାକୁ ଏ ପର୍ଯ୍ୟନ୍ତ ଛୁଇଁ ନାହିଁ । ସଂସାରର ଦୁଃଖ ଶୋକ ଜଞ୍ଜାଳ ଏବଂ ସମାସ୍ୟା କୁସୁମାକୁ ବିବ୍ରତ କରି ନାହିଁ । ସେ କେବଳ ହସି ଜାଣିଛି । ସରଳ ଭାବରେ ବଞ୍ଚି ଶିଖିଛି ।ଠାକୁର ଗୌନ୍ତିଆ ଜଣେ ଖାଣ୍ଟି ମଣିଷ । ନ୍ୟାୟବନ୍ତ ସେ । ତାଙ୍କର ଏହି ଭଲ ଗୁଣପାଇଁ ପଚିଶ ଖଣ୍ଡ ପଲ୍ଲୀର ଲୋକେ ତାଙ୍କୁ ଖାତିରି କରନ୍ତି । ତାଙ୍କ କଥା ମାନନ୍ତି । ଯାହା ଗୋଳମାଳ ବା ଅସୁବିଧା ହୁଏ, ଠାକୁର ଗୌନ୍ତିଆ ସବୁକିଛିର ମିମାଂସା କରନ୍ତି । କୁସୁମା ତାଙ୍କର ଆଦରଣୀୟ କନ୍ୟା ।

ଫୁଲରାଣୀ ଖୋଜି ଖୋଜି ହାଲିଆ ହେଲାଣି । କୁସୁମାକୁ କ୍ଷଣେ ନ ଦେଖିଲେ ତାକୁ ଏ ସଂସାର ଅସାର ପରି ମନେ ହୁଏ । ପୋଖରୀ କୂଳ, ଠାକୁର ମନ୍ଦିର ଚୌପାଢ଼ୀ ଠାରୁ ଆରମ୍ଭ କରି ଘର ଘର ବୁଲି ଖୋଜିଛି ଫୁଲରାଣୀ । ଶେଷରେ ଆଖୁକ୍ଷେତ ପାଖରେ ଏକା ବସିଥିବାର ଦେଖି କହିଲା, ଅପା ! ତୁ ଏଇଠି ଅଛୁ, ମୁଁ ପଲ୍ଲୀସାରା ଖୋଜି ସାରିଲିଣି । ଏଠି ମନ ମାରି ଦେଇ ବସିଛୁ କାହିଁକି କିଲେ ?

କୁସୁମା କିଛି ନ କହି ମୌନ ରହିଲା ।

ଫୁଲଗଣୀ ଆହୁରି ସନ୍ଦେହରେ ପଡଗଲା ।

କିଲୋ ଅପା ! କଥା କ'ଣ, ମନ ଖରାପ କାହିଁକି ? କିଏ ତୋ ମନରେ ଆଘାତ ଦେଇଛି ଯେ ?

ଫୁଲଗଣୀ ଭରି ଅଝଟ । ଯାହା ବୁଝିଥିବ ସେଇଥିରେ ତା'ର ବିଶ୍ୱାସ । ଯେତେ କୁହ, କିଛି ଶୁଣିବ ମାହିଁ । ସବୁ-ବେଳେ ଲାଗିଥିବ ଜିଦି ରଖିବାକୁ । ମନୋଭାବ ଲୁଚାଇ ରଖି କୁସୁମା କହିଲା, ଆଜି କାହିଁକି ମନ ଭଲ ଲାଗୁନାହିଁ ! ଫୁଲ-ଗଣୀ କୁସୁମଠାରୁ ନୂଆ କଥା ପଦକ ଶୁଣି କହିଲା, ତୋ ମନରେ ତ କେବେ ଦୁଃଖ ନ ଥାଏ । ଆଜି ତୋର କ'ଣ ହେଲା ଯେ ।

—ଜାଣେନା ।

—ଅପା !

—ଉଁ ।

—ମତେ ଲୁଚାଉଛୁ ?

—କେଉଁ କଥା ।

—ତୋ ମନ କିଏ ଲୁଟି ନେଇଛିକି ?

—ଚୁପ୍ କର ।

—ଫୁଲିଆ ।

—ମିଛ କହନା । ସତ କହିଲୁ କିଏ ତୋତେ ଚିନ୍ତାରେ ପକାଇଛି ।

—ପାଗଳାମି କରନା । ଘରକୁ ଯିବୁ ତ ଆ

—ନା ଆଗ କହ ତୋର କ'ଣ ହୋଇଛି ।

—କିଛି ହୋଇନାହିଁ ।

—ଗତକାଲି ସୁଧାର ବାହାଘର ହୋଇଗଲା ।

—ହଁ ।

—ତୋ ମନ ହେଉଛି ବାହା ହେବାକୁ ?

—ଦୁଷ୍ଟ !

—ବାପା କହୁଥିଲେ·······

—କ'ଣ ?

—ବଡଲୋକ ଘରେ ତୋର ବାହାଘର ହେବ ।

—ମୋ ବାହାଘର ପାଇଁ ତୋ ମୁଣ୍ଡ ବିନ୍ଧୁଛି କାହିଁକି ?

ଫୁଲରାଣୀ ଫୁଲେଇ ପରି କହିଲା, ତୋ ବାହାଘର ନ-ହେଲେ ମୋ ବାହାଘର ଯେ ହୋଇପାରୁ ନାହିଁ । ତୁ ମୋର ଶତ୍ରୁ ହୋଇଯାଇଛୁ ।

କୁସୁମା କହିଲା, ତୁ ଯଦି ମତେ ଶତ୍ରୁ ମନେ କରୁଛୁ କହ ମୁଁ ଆତ୍ମହତ୍ୟା କରିବି ।

ଅପା ! ଏତେବଡ଼ ଅମଙ୍ଗଳ କଥା କହିଲୁ ! ଫୁଲରାଣୀ କାନ୍ଦ ପକାଇଲା । କୁସୁମା ଫୁଲରାଣୀକୁ କୋଳେଇ ନେଇ କହିଲା, ମୋ ସୁନା ଭଉଣୀ କାନ୍ଦେନା । ମିଛରେ କହିଲି ପଗ ····ତୁ କାନ୍ଦୁଛୁ କାହିଁକି ।

କାନ୍ଦୁଚି କୁସୁମା ।

ଫୁଲରଣୀ ତା ଆଖିରୁ ଲୁହ ପୋଛି ଦେଇ କହିଲା ସତ କହ ତୋର କ'ଣ ହୋଇଛି । ଆଜି ତୋତେ ନୂଆ ରୂପରେ ଦେଖୁଚି । ଯେପରି ସବୁ ସରାଗ କିଏ ଛଡ଼ାଇ ନେଇଛି ।

କିଛି କହି ପାରିଲା ନାହିଁ କୁସୁମା ।

ଧର୍ମର ସ୍ତ୍ରୀ ସାଧବାଣୀ ଡ଼ାକି ଡ଼ାକି ପାଖରେ ପହଞ୍ଚି କହିଲେ ଏଇଠି ତମେ ଦି' ଜଣ । ମୁଁ କେତେ ଡାକିଲିଣି ! ଏଠି କ'ଣ ହେଉଛି । ଦିନ କେତେ ହେଲାଣି ଖାଇବ ନାହିଁକି ?

—ଅପା ମନ ଖରାପ । କହିଲା ଫୁଲରଣୀ ।

ସାଧବାଣୀ କୁସୁମା ପାଖକୁ ଆସି କହିଲା, ମନ ଖରାପ କାହିଁକି ଗୋ ନଣନ୍ଦ ରାଣୀ । କାହାକୁ ମନଟା ଯାଚି ଦେଇଛକି ?

ଅଭିମାନ କଲା କୁସୁମା ।

ଫୁଲରଣୀ କହିଲା, କେବେ ତାକୁ ଏପରି ମୁଁ ଦେଖି-ନାହିଁ । ଆଜି ସକାଳଟାରୁ ମୁହଁ ଫୁଲେଇ ଦେଇଛି । ଦେହତ ଭଲ ଅଛି । ମନ ଊଣା ଯାହା, କହିଲେ ଜଣା ପଡ଼ନ୍ତା । କିଛି ହେଲେ କହୁନି !

କୁସୁମା ଫୁଲରଣୀ ଗାଲରେ ଚୁପୁଡ଼ାଏ ଦେଇ କହିଲା, କାହିଁକି ଛୋଟ କଥାକୁ ବଡ଼ କରୁଛୁ କହିଲୁ । ମୋ ଦେହ ଭଲ ଅଛି ମନ ବି ଭଲ ଅଛି । ଦୁଃଖ ଯାହା ତୋ ପାଇଁ ।

—ମୋ ପାଇଁ ? ବୁଝିପାରିଲା ନାହିଁ ଫୁଲରଣୀ ।

—ହଁ, ତୋର ବାହାଘର ହେଲେ ମୁଁ ନିଶ୍ଚିନ୍ତ ହେବି ।

—ଆଲୋ ଅପା ! ଆଗ ମୋ ବାହାଘର ନା ତୋର ?

—ତୋର ।

—ତୁ ବଡ ଯେ ।

—ହେଲେ କ'ଣ ଅଛି । ତୁ କଳି ହୁଡଟା ଆଗ ଗଲେ କି ମଲେ ମୋର ଶାନ୍ତ ।

ହସି ଉଠିଲେ ଫୁଲରାଣୀ

—ହଉ, କଳି କଜିଆ ଏତିକିରେ ଥାଉ ଯେ । କୁସୁମାକୁ ଟାଣି ନେଇଗଲା ଭନ୍ଦଜ ସାଧବାଣୀ ।

× × ×

ଠାକୁର ଗୌନ୍ତଆ ଏଇ କେତେଦିନ ହେଲା ଗମ୍ଭୀର । ସର୍ବଦା ଯେପରି କିଛି ଭାବୁଛନ୍ତି ।

ନ୍ୟାୟ୍ ନିଶାପକୁ ଡ଼ାକର ଆସିଲେ ମନା କରି ଦେଉଛନ୍ତି । ଭଲ କାମରେ ପହଞ୍ଚି ପାରୁ ନାହାନ୍ତି । ଦେଖୁ ଦେଖୁ କୁସୁମାକୁ ଅଠର ପୁରିଲାଣି । ଯେତେ ଶୀଘ୍ର ମୁକ୍ତି । ସହଜେ ଫୁଲରାଣୀ କୁସୁମା ପଛରେ ଅଛି । ତାପରେ ସାନଟିର ବାହାଘର । ସାନ ପାଇଁ ଏତେଟା ଚିନ୍ତା ନାହିଁ ।

ଅନେକ ସ୍ଥାନରୁ ପ୍ରସ୍ତାବ ଆସିଛି । କେତେ ଜଣ ମଧ୍ୟସ୍ଥି ଫେରିଗଲେଣି । ଗୌନ୍ତଆଙ୍କ ଘରେ ବନ୍ଧୁ ବାନ୍ଧବାଙ୍କୁ କିଏବା ମନା କରିବ । କିନ୍ତୁ ଗୌନ୍ତଆଙ୍କ ମନ ମାନୁ ନାହିଁ ।

ତାଙ୍କ ମନ ମୁତାବକ ପାତ୍ରଟିଏ ନ ହେଲେ ବାହାଘର କରିବେ ନାହିଁ ବୋଲି ଜିଦି ଧରିଛନ୍ତି । ତାଙ୍କ ଇଚ୍ଛା ଜ୍ୱାଇଁଟି ଅଧିକ ପଢିଥିବ । ଭଦ୍ର ହୋଇଥିବ । ବଂଶର ଗୌରବ ଥିବ । ସେ-ପରି ଘରେ କୁସୁମାକୁ ବିବାହ ଦେବେ । ଦିନକୁ ଦିନ ଚିନ୍ତା ବଢୁଛି ହେଲେ କାମ ସରୁନାହିଁ ।

ଗୌନ୍ତିଆଙ୍କ ମନ ମାନୁନାହିଁ ।

ଯେଉଁଟି ପ୍ରସ୍ତାବ ପଡୁଛି ଗୌନ୍ତିଆ ନିଜେଯାଇ ଦେଖି ଆସୁଛନ୍ତି । ପରେ ଖବର ପଠାଇ ବାରଣ କରି ଦେଉଛନ୍ତି ।

ଧର୍ମବୀର କହେ । ଏତେ ତରତର କାହିଁକି । କୁସୁମାକୁ ପାଖରୁ ଛାଡବାକୁ ମନ ଛୁହୁଁନି । କେତେ ଶ୍ରଦ୍ଧା, ଗେହ୍ଲା ଆଉ ସରାଗରେ ସେ ଏ ଘରେ ଖେଳୁଚି, ବୁଲୁଚି । ତାକୁ ତଡିଦେଲେ ଏ ଘର କ'ଣ ସୁନ୍ଦର ଦେଖାଯିବ ବାପା !

ଗୌନ୍ତିଆ କାନ୍ଦ ଉଠନ୍ତି ।

ମନଟା ବିଳାପକରେ ।

ଝିଅ ଜନ୍ମତ ପର ଘରକୁ ।

ତାକୁ କିଏ ଅବା ଘରେ ରଖିବ ।

ପରଘର ଦରବ ସେ ପର ଘରପାଇଁ ଜନ୍ମ ।

ରଜା ମହାରଜାଙ୍କର ଝିଅ ହେଉ କି ମୂଲିଆର ଝିଅ ହେଉ ଦିନେନା ଦିନେ ପରଘରକୁ ଯିବ ।

ଗୌନ୍ତଆ କହନ୍ତ । ଆରେ ଧରମା । ଫୁଲରଣୀ ପାଇଁ ମୋର ଚିନ୍ତା ନାହିଁ ଚିନ୍ତା,ଯାହା କୁସୁମା ପାଇଁ । ତାକୁ ଆଗ ବାହାଦେଲେ ପରେ ସାନ ଝିଅଟା କଥା ।

-ତୁ ଜାଣିଛୁ.....ସେ ମୋ ଝିଅ ନୁହେଁ ।

କାହାର ଝିଅ ମୋତେ ବି ଜଣାନାହିଁ । ଭଗବାନଙ୍କ ଦାନ ମନେକରି ଯେଉଁଦିନ କୁସୁମାକୁ କୋଳରେ ଧଇଲି, ସେହିଦିନ ଶପଥ କଲି ମୋର ସବୁଶକ୍ତି ଖଟାଇ ତାକୁ ମଣିଷ କରିବି । ମୋର କ'ଣ ଇଚ୍ଛା ଜାଣିଛୁ ବାବୁ ?

—କ'ଣ ବାପା ।

—ମୁଁ ଭଲ ଝିଅ କୁସୁମାକୁ ଏପରି ଘରେ ବାହାଦେବି, ସେ ଦିନକ ପାଇଁ ମୋତେ ମନେ ପକାଇବ ନାହିଁ । ତା'ର ସୁଖ ଶାନ୍ତି ଦେଖି ଦେଖି ମୋର ଦିନ ଗ୍ଲିଯିବ । ସୁଖରେ ରହିବ ଝିଅ ମୋର ଏତିକି କାମନା ।

—ବୁଝିଲି ଯେ ସେପରି ଘର, ବର ମିଳିଲେତ ?

—ମିଳିବରେ ବାପ....ନିଶ୍ଚେ ମିଳିବ ।

—ବଡ଼ ଘରେ ବାହା ଦେଲେ....

—ବହୁତ ଟଙ୍କା ଦରକାର ।

—ହଁ ।

—ଦେବି ।

—ତେବେ ଡେରି କରୁଛ କାହିଁକି ?

—ଝିଅ ସାଙ୍ଗକୁ ଜ୍ୱାଇଁ ମିଳୁ ନାହି ।

—ତୁମ ମନକୁ ଆସୁନାହିଁ ତ ।

—ନା । କିପରି ଆସିବ ଯେ । କୁସୁମା ରୂପ ଗୁଣକୁ ଯାହିଁ ବରପାତ୍ରଟି ଯଦି ଅଧିକ ନହେବ···ତେବେ ଝିଅଟା ମୋର ମନ ଦୁଃଖ କରିବନି ?

—ହିଁ ।

—କାନ୍ଦବଟ ।

—ହିଁ ।

—ଏଇ ଚିନ୍ତାରେ ମୁଁ ମରୁଛି ।

ସେଦିନ ଧର୍ମବୀର ବାପ ସହିତ ତର୍କ କରିପାରିଲା ନାହିଁ । ସେ ଜାଣିଛି ବାପା କୁସୁମାକୁ ଖୁବ୍ ଶ୍ରଦ୍ଧା କରନ୍ତି, ତାଙ୍କ ମନ ନ ମାନିବା ପର୍ଯ୍ୟନ୍ତ ବୁଲିବୁଲି ବର ଦେଖୁଥିବେ କୁସୁମାର ବୟସତ ଅଠର ।

—ଯାଉ ଗୋଟାଏ ଦୁଇଟା ବର୍ଷ ।

ସେହି ଦିନଠାରୁ ଧର୍ମବୀର କୁସୁମାର ବାହାଘର କଥା ଗୌନ୍ତଆଙ୍କୁ ପଚାରେ ନାହିଁ

ବୋହୁଠାରେ ଶୁଣିପାରି ସେ କୁସୁମା ପାଖକୁ ଯାଇ ତାକୁ କୋଳରେ ବସାଇ କହିଲେ, ।।ଛରେ ମା'ର କ'ଣ ହୋଇଛିକି ? କହ ମା' କ'ଣ ଦରକାର !

—କିଛି ନାହିଁ ।

—କିଏ କ'ଣ କହିଛି !

—ନା ।

—ଭଉଜ କେଶବାନ୍ଧ ଦେଲା ନାହିଁ କି ?

—ଦେଇଛି ।

— ଫୁଲରାଣୀ ତୋତେ କିଛି କହିଲା ?

—ନାହିଁ ମ ।

—ତେବେ ମନ ଦୁଃଖ କରିଛୁ କାହିଁକି ?

—ମନ ଭଲ ନାହିଁ ।

—କାରଣଟା କ'ଣ ?

—କିଛି ନାହିଁ ।

ଗୌନ୍ତଆଏ କୁସୁମାକୁ ଆଦର କରି ଉଚହାସ୍ୟ କରି କହିଲେ, ବାୟାଣୀଟା ମୋର କ'ଣ ଯେ କହେ....ବୁଝି ହୁଏନା । ଆ...ଆ ମୋ ସହିତ ।

ଗୌନ୍ତଆ କୁସୁମାକୁ ସାଥିରେ ନେଇ ବଗିଚ୍ଛଆଡେ ଚାଲି ଚାଲି ଗଲେ । ଖଣ୍ଡେ କାଠଗଡ଼ ଉପରେ ବସାଇ ଦେଇ ନିଜେ ବସିପଡ଼ କହିଲେ, ଏଇନେ ଗୋଟାଏ ବଢ଼ିଆ କାହାଣୀ କହିବି ଶୁଣିବୁ ।

—କି କାହାଣୀ ?

—ତୁ କହ । ଯାହା ବରଦ କରିବୁ, ଶୁଣିବୁ ।

—ତୁମ ଇଚ୍ଛା ।

—ରାମ ସୀତା କଥା ଶୁଣିବୁ ମା' ?

—ନା ।

—ସତୀ ସାବିତ୍ରୀ କଥା ଶୁଣିବୁ ?

—ନା ।

—ନଳ ଦମୟନ୍ତୀ କଥା ?

—ଉଁ ହୁଁ । ବହୁବାର ଶୁଣିଛି ।

କୁସୁମା ମନା କରେ । ଗୋଟାଏ ପରେ ଗୋଟାଏ କାହାଣୀ ଶୁଣାଇବାକୁ ଠାକୁର ଗୌନ୍ତଆ ମତ ଦିଅନ୍ତ । କୁସୁମାର ମନ ମାନେନା । ଶେଷରେ ଗୌନ୍ତଆ କହିଲେ, ମହାଦାନି ହରିଶ୍ଚନ୍ଦ୍ରଙ୍କ ଦୁଃଖାନ୍ତ କାହାଣୀ ଶୁଣିବୁ ।

—ହଁ କୁହ ବାପା···କୁହ । ରାଣୀ ଶୈବ୍ୟାଙ୍କ ସମ୍ପର୍କରେ ଶୁଣିବାକୁ ମତେ ଖୁବ୍ ଭଲ ଲାଗେ । ଆଖିରେ ଲୁହ ରହେନା ଏତେ ଦୁଃଖ କଷ୍ଟ ସହ୍ୟକରି ରାଜା ରାଣୀ ଦୁହେଁ ଶେଷରେ ପୂର୍ବ ସୁଖ ପାଇ ପାରିଥିଲେ । ଆଜିର ଦୁନିଆଁରେ ତାଙ୍କ ପରି ଆଦର୍ଶ ମଣିଷ କାହାନ୍ତି ।

ସ୍ୱାର୍ଥ ତ୍ୟାଗ କରିବା ତ ଏତେ ସହଜ ନୁହେଁ ।

ଠାକୁର ଗୌନ୍ତଆ ଏହିପରି ଅନେକ ଆଦର୍ଶ କାହାଣୀ ଶୁଣାନ୍ତ କୁସୁମାକୁ । ବଡ଼ ଆଗ୍ରହରେ କୁସୁମା ପ୍ରଶ୍ନ ପରେ ପ୍ରଶ୍ନ ପଚାରି ବସେ ।

ଆଜି କିନ୍ତୁ ତା'ର ପରିବର୍ତ୍ତନ ହୋଇଛି ।

କଥାଟା ଶୁଣିବାରେ କୁସୁମାର ଆଗ୍ରହ ନାହିଁ ।

ପ୍ରଶ୍ନ ପଚାରୁ ନାହିଁ ।

ଯେପରି କିଛି ହଜାଇ ଖୋଜୁଛି ।

ଠାକୁର ଗୌନ୍ତିଆ କୁସୁମାକୁ ଚାହିଁଲେ, ଜାଣିପାରିଲେ କୁସୁମାର କିଛି ହଜିଛି ।

କ'ଣ ହଜିଛି ?

ଗହଣାତ ଠିକ୍ ଅଛି ।

ତେବେ କ'ଣ·······

କିଛି ଭାବିପାରିଲେ ନାହିଁ ଠାକୁର ଗୌନ୍ତିଆ । ବୋହୂକୁ ପଚାରି ବୁଝିଲେ । ସେ ମନାକଲା । ଫୁଲରାଣୀ କହିଲା ମୁଁ ଜାଣିନି ।

ଗୌନ୍ତିଆ କୁସୁମାକୁ ଅଧିକ ବିରକ୍ତ ନକରି ନିଜ କାମରେ ଚାଲିଗଲେ । ବୁଝିହେଉ ନାହିଁ, କୁସୁମାର ପରିବର୍ତ୍ତନର କାରଣ କ'ଣ ?

ବାକ୍ସଟି ସେହିପରି ଥୁଆ ହୋଇଛି ।

ତାଲା ପଡଛି । ଚାବି ନାହିଁ ।

ଚିଠିଟି ମଧ୍ୟ ରଖିଛନ୍ତି ଗୌନ୍ତିଆ । ଚିଠିରେ ଲେଖାଥିଲା—

ହେ ମହାନ ବ୍ୟକ୍ତି !

> ମୋର ନମସ୍କାର । ଏ କନ୍ୟାକୁ ପାଳନ କରି ଭଲ ବର, ଭଲ ଘର ଦେଖି ବିବାହ ଦେବେ । ଯେତେଦୂର ସମ୍ଭବ ଏହା ଗୋପନ ରଖିବେ । ବାକ୍ସଟି ବର୍ତ୍ତମାନ ପାଇଁ ଖୋଲିବେ ନାହିଁ । ଝିଅ ବିବାହ ପରେ ତାକୁ ଏହି ବାକ୍ସଟି ଦେବେ । ଏହି ଝିଅଟିର ବିବାହ ପରେ ଆପଣ ତାକୁ ପାଳନ କରିଥିବା ପାଇଁ ଉପଯୁକ୍ତ ମଜୁରୀ ଦିଆଯିବ ।
>
> ଶେଷରେ ମୋର ନମସ୍କାର ନେବେ ।
>
> 'ଜଣେ ଅଭାଗିନୀ'

ଠାକୁର ଗୌନ୍ତିଆ ସତ୍ୟ ଲଙ୍ଘନ କରି ନାହାନ୍ତି । ଚିଠିରେ ଲେଖା ଯାଇଥିବା କଥା ମୁତାବକ ସେ କାମ କରି ଚାଲିଛନ୍ତି । ମଜୁରି କାମନା କରି ନାହାନ୍ତି । ଏହା ମଧ୍ୟରେ ଅଠର ବର୍ଷ ବିତି ଯାଇଛି ।

ଶଶୁ କୁସୁମୀ ଆଜି ଯୌବନରେ ପଦାର୍ପଣ କରିଛି । ମାଟ୍ରିକ୍ ପାଶ୍ କରିଛି । ପାଖରେ କଲେଜ ନାହିଁ । ବଣ ଜଙ୍ଗଲର ଅଞ୍ଚଳ । ସହରରେ ରଖି କଲେଜରେ କୁସୁମୀକୁ ପଢ଼ାଇବାକୁ ଗୌନ୍ତିଆଏ ଅଧିକ ପସନ୍ଦ କଲେ ନାହିଁ । ଯେତିକି ପଢ଼ିଛି ସେତିକି । ପରଘର ମଣିଷ କୁସୁମୀ ।

ଯୋଗ୍ୟବର ଦେଖି ବାହା କରିଦେଲେ କାମ ଶେଷ ।

ଭଗବାନ ମାୟାର ସାଗର ।

କେଉଁଠି କୁସୁମୀ ପାଇଁ ବର ଲୁଚାଇଛନ୍ତି ତାଙ୍କୁ ଜଣା । ଖୋଜି ଖୋଜି ହାଲିଆ ହେଲେଣି ଗୌନ୍ତିଆ । କାଲିଠାରୁ ଦୁଇଜଣ ମଧ୍ୟସ୍ଥି ଯାଇଛନ୍ତି···ଏଯାଏ ଫେରି ନାହାନ୍ତି··· ଆସିଲେ ଜଣା ପଡ଼ିବ ।

କିଏବା ଚିରଦିନ ପାଇଁ ଝିଅକୁ କୋଳରେ ଲୁଚାଇ ରଖି-ପାରିଛି ।

ଯେତେ ଆଦର ସୋହାଗରେ ବଢ଼ାଇଥିଲେ ମଧ୍ୟ ଦିନେନା ଦିନେ ବାପ-ମା'ଙ୍କୁ ଛାଡ଼ି ଝିଅ ଚାଲିଯିବ .ତା ଘର କରିବାକୁ । ଆପଣାର ଲୋକ ସାତପର ହୋଇଯିବେ, ପର ଯେଉଁମାନେ ହେବେ ଆପଣାର ।

ଏହାହିଁ ଏ ସଂସାରର ଧରାବନ୍ଧା ନୀତି ।

ଧନୀ କୁହ ଗରିବ କୁହ କିମ୍ବା ମଧ୍ୟବିତ୍ତ ପରିବାର କୁହ ସମସ୍ତେ ଏକ କଣ୍ଠରେ କହିବେ ଝିଅ ପରଘର ପରିବା ।

ଠାକୁର ଗୌନ୍ତିଆ ଧର୍ମ କର୍ମ ମାନି ଚଳନ୍ତି ।

ମିଛ ଖଚ ଚୁଗୁଲି କିମ୍ବା ଅନ୍ୟାୟକୁ ଖୁବ୍ ଘୃଣା କରନ୍ତି । ମିଛ ତାଙ୍କ ଜୀବନକୁ କଳଙ୍କିତ କରିପାରି ନାହିଁ । ସ୍ୱାର୍ଥ ଲୋଭରେ କାହାରି ଶତ୍ରୁ ହେବାକୁ ଗୌନ୍ତିଆ ପସନ୍ଦ କରନ୍ତି ନାହିଁ ।

ଅନେକ ଦିନ ତଳେ...

ସେ ଯେଉଁ ଦିନ କୁସୁମୀକୁ ପାଇଲେ ଠିକ୍ ସେହିଦିନର କଥା । ଆଶା କରିଥିଲେ ବାକ୍ସଟିକୁ ଖୋଲି ଦେଖିବାକୁ । ମନରେ ଉତ୍କଣ୍ଠା ଜାତ ହେଲା । ବାରମ୍ବାର ଚିନ୍ତାକଲେ । ଲୋଭ ତାଙ୍କୁ ବାଧ୍ୟ କଲା । ସ୍ୱାର୍ଥ ତାଙ୍କୁ କମ୍ପାଇ ଦେଲା । ପାଞ୍ଚମନ ଏକସଙ୍ଗେ କହିଲେ, ବାକ୍ସଟି ଖୋଲି ଦିଅ । ବାକ୍ସରେ ବହୁ ଟଙ୍କା ରହିଛି ।

ତୁମେ ଏକାଥରେ ଲକ୍ଷପତି ହୋଇଯିବ ।

ସେ ପିଲାଟାକୁ ପାହାଡ଼ ଉପରୁ ଫିଙ୍ଗିଦିଅ ।

କେହି ଜାଣିବେ ନାହିଁ ।

କେହି ତୁମକୁ ଧରିପାରିବେ ନାହିଁ ।

ଖୋଲି ଦେଖନା ।

ନିଶ୍ଚୟ ଲକ୍ଷ ଲକ୍ଷ ଟଙ୍କା ରହିଛି ।

ଆଃ !

ଡେ଼ରି କରୁଛ କାହିଁକି ? ଖୋଲି ଦେଖ !

ଗୌନ୍ତିଆ ଲୋଭର ବାସନ୍ଧ କଲେ ନାହିଁ । ସତ୍ୟ ଲଙ୍ଘନ କଲେ ନାହିଁ । ବାକ୍ସରେ ଲକ୍ଷ ଲକ୍ଷ ଟଙ୍କା ଥାଉ କି କୋଟି କୋଟି ଥାଉ, ତାଙ୍କର କ'ଣ ଅଛି ? ଚିଠିରେ ଯାହା ନିର୍ଦ୍ଦେଶ ରହିଛି ତାହା ସେ ନିଶ୍ଚୟ ପାଳନ କରିବେ ।

କୁସୁମୀକୁ ଭଲଘର ଭଲବର ଦେଖି ବିବାହ ଦେଇ-ଦେଲେ ନିଶ୍ଚିନ୍ତ ହୋଇଯିବେ । ତେଣିକି ଝିଅଟାର ଭାଗ୍ୟ । କାହା ଭାଗ୍ୟରେ କଣ କିଏ ଜାଣେ । ଏକପରେ ଅନେକ ପ୍ରସ୍ତାବ ଆସିଛି । ଗୌନ୍ତିଆ ମନ ମାନିନାହିଁ । ତାଙ୍କର ବିଶ୍ୱାସୀ ଲୋକେ ହତାଶ ହୋଇ ଯାଇଛନ୍ତି, ମନ ଯେଉଁଠି ଜ୍ୱାଇଁଠାରେ ମାନିଛି ଧନ ନାହିଁ । ଧନ ଥିଲେ ପାତ୍ରଟି ମନ ପସନ୍ଦ ନୁହେଁ । ଆଶା ହରାଇ ନାହାନ୍ତି ଠାକୁର ଗୌନ୍ତିଆ ।

ଖୋଜିବାରେ ଲାଗିଛନ୍ତି ।

କୁସୁମୀ ସବୁ ଜାଣେ । ସବୁ ଦେଖେ । ଭାଇଠାରୁ ତା ଜନ୍ମ ଇତିହାସ ଶୁଣିଲା ପରେ ଚିନ୍ତିତ ହୋଇ ପଡିଛି । ମୁହଁରୁ ହସ ଲିଭି ଯାଇଛି । ଚପଳତା ନାହିଁ । ଚଞ୍ଚଳ ସ୍ୱଭାବ ନାହିଁ, କାହାରି ସହିତ କଥା ନାହିଁ । ସାଙ୍ଗସାଥିମାନେ ନିରାଶରେ ଫେରୁଛନ୍ତି । ଫୁଲହାର ଗୁନ୍ଥୁ ନାହିଁ କି ତାହା ଗଳାରେପିନ୍ଧି-ବାର ଆଗ୍ରହ ନାହିଁ । ଶିବ ମନ୍ଦିରକୁ ଯିବା ବନ୍ଦକରି ଦେଇଛି । ସର୍ବଦା ନୀରବ ରହୁଛି । ଭାବୁଛି ସବୁବେଳେ ଏକା ଏକା ।

ଆଜି ସାଥିଝିଅମାନେ ତାକୁ ଛାଡ଼ିଲେ ନାହିଁ ।

ଜୋର କରି ଟାଣି ଟାଣି ନେଇଗଲେ ମନ୍ଦିର ଆଡେ ।

'ମୋତେ ରାଜି ହେଉ ନଥିଲ । ସାଥିମାନେ ବାଧ୍ୟ କରି-ବାରୁ ଗଲ । ହଁ, ମନଟା ପରିବର୍ତ୍ତନ ହୋଇ ଯିବତ । ଘରେ ମୋତେ ଭଲ ଲାଗୁନାହିଁ ।

ମୋତିଝର କହିଲା, କୁସୁମୀର ମନଟାକୁ କେହି ଚୋରି କରି ନେଇ ଯାଇଛି । ସେଥିପାଇଁ ସେ ଭବନା ରାଜ୍ୟରେ ଘୂରୁଛି !

ସାଧବୀ କହିଲା, କାହାକୁ ମନଟା ଦେଇ ଦେଇଛୁ କହିଲୁ କୁସୁମୀ ?

ମଲ୍ଲୀ କହିଲା, କିଏ ସେ ସୁଖିର ପୁରୁଷ । ଯିଏ କି ତୋତେ ବାଟବଣା କରି ଦେଇଛି ?

କୁସୁମୀ କାହାରିକୁ ଉତ୍ତର ଦେଲା ନାହିଁ ।

କି ଉତ୍ତର ବା ଦେବାକୁ ଅଛି ଯେ ଦେବ ।

ଯାହା କହି ହୁଏନା ତାହା ନିଜ ମଧ୍ୟରେ ହିଁ କୁହୁଳି କୁହୁଳି ଜଳେ । ନିଜକୁ ଜାଳିବା ସାର ହୁଏ ।

କୁସୁମୀ ନିଜକୁ ଅସହାୟ ମନେ କରୁଛି ।

ଖୋଜି ବୁଲୁଛି କିଏ ତାର ବାପ ମା' ।

ଶେଷରେ ଗୌନ୍ତଆଙ୍କୁ ପ୍ରଶ୍ନ କଲା କୁସୁମୀ । ବାପା ! ମୋର ବାପ ମା' କିଏ ? ମୁଁ କାହାର ଝିଅ ?

ଗୌନ୍ତଆ ତାକୁ ଭୁଲାଇ ପାରିଲେ ନାହିଁ ।

ସତ କହିଲେ ।

ଗୌନ୍ତଆ ଲୋଭର ବାସଦ୍ଧ କଲେ ନାହିଁ । ସତ୍ୟ ଲଙ୍ଘନ କଲେ ନାହିଁ । ବାକ୍ସରେ ଲକ୍ଷ ଲକ୍ଷ ଟଙ୍କା ଥାଉ କି କୋଟି କୋଟି ଥାଉ, ତାଙ୍କର କ'ଣ ଅଛି ? ଚିଠିରେ ଯାହା ନିର୍ଦ୍ଦେଶ ରହିଛି ତାହା 'ସେ ନିଶ୍ଚୟ ପାଳନ କରିବେ ।

କୁସୁମୀକୁ ଭଲଘର ଭଲବର ଦେଖି ବିବାହ ଦେଇ-ଦେଲେ ନିଶ୍ଚିନ୍ତ ହୋଇଯିବେ । ତେଣିକି ଝିଅଟାର ଭାଗ୍ୟ । କାହା ଭାଗ୍ୟରେ କଣ କିଏ ଜାଣେ । ଏକପରେ ଅନେକ ପ୍ରସ୍ତାବ ଆସିଛି । ଗୌନ୍ତଆ ମନ ମାନିନାହିଁ । ତାଙ୍କର ବିଶ୍ୱାସୀ ଲୋକେ ହତାଶ ହୋଇ ଯାଇଛନ୍ତି, ମନ ପେଉଁଠି ଜାଇଁଠାରେ ମାନିଛି ଧନ ନାହିଁ । ଧନ ଥିଲେ ପାତ୍ରଟି ମନ ପସନ୍ଦ ନୁହେଁ । ଆଶା ହରାଇ ନାହାନ୍ତି ଠାକୁର ଗୌନ୍ତଆ ।

ଖୋଜିବାରେ ଲାଗିଛନ୍ତି ।

କୁସୁମୀ ସବୁ ଜାଣେ । ସବୁ ଦେଖେ । ଭାଇଠାରୁ ତା ଜନ୍ମ ଇତିହାସ ଶୁଣିଲା ପରେ ଚିନ୍ତିତ ହୋଇ ପଡିଛି । ମୁହଁରୁ ହସ ଲିଭି ଯାଇଛି । ଚପଳତା ନାହିଁ । ଚଞ୍ଚଳ ସ୍ୱଭାବ ନାହିଁ, କାହାରି ସହିତ କଥା ନାହିଁ । ସାଙ୍ଗସାଥିମାନେ ନିରାଶରେ ଫେରୁଛନ୍ତି । ଫୁଲହାର ଗୁନ୍ଥୁ ନାହିଁ କି ତାହା ଗଳାରେପିନ୍ଧି-ବାର ଆଗ୍ରହ ନାହିଁ । ଶିବ ମନ୍ଦିରକୁ ଯିବା ବନ୍ଦକରି ଦେଇଛି । ସର୍ବଦା ନୀରବ ରହୁଛି । ଭାବୁଛି ସବୁବେଳେ ଏକା ଏକା ।

ଆଜି ସାଥିଝିଅମାନେ ତାକୁ ଛାଡ଼ିଲେ ନାହିଁ ।

ଜୋର କରି ଟାଣି ଟାଣି ନେଇଗଲେ ମନ୍ଦିର ଆଡେ଼ ।

'ମୋଟେ ରାଜି ହେଉ ନଥିଲା । ସାଥିମାନେ ବାଧ୍ୟ କରି-ବାରୁ ଗଲା । ହଁ, ମନଟା ପରିବର୍ତ୍ତନ ହୋଇ ଯିବତ । ଘରେ ମୋଟେ ଭଲ ଲାଗୁନାହିଁ ।

ମୋତିଝରା କହିଲା, କୁସୁମୀର ମନଟାକୁ କେହି ଚୋରି କରି ନେଇ ଯାଇଛି । ସେଥିପାଇଁ ସେ ଭାବନା ରାଜ୍ୟରେ ଘୁରୁଛି !

ସାଧବୀ କହିଲା, କାହାକୁ ମନଟା ଦେଇ ଦେଇଛୁ କହିଲୁ କୁସୁମୀ ?

ମଲ୍ଲୀ କହିଲା, କିଏ ସେ ସୁଖର ପୁରୁଷ । ଯିଏ କି ତୋତେ ବାଟବଣା କରି ଦେଇଛି ?

କୁସୁମୀ କାହାରିକୁ ଉତ୍ତର ଦେଲା ନାହିଁ ।

କି ଉତ୍ତର ବା ଦେବାକୁ ଅଛି ଯେ ଦେବ ।

ଯାହା କହି ହୁଏନା ତାହା ନିଜ ମଧ୍ୟରେ ହିଁ କୁହୁଳି କୁହୁଳି ଜଳେ । ନିଜକୁ ଜାଳିବା ସାର ହୁଏ ।

କୁସୁମୀ ନିଜକୁ ଅସହାୟ ମନେ କରୁଛି ।

ଖୋଜି ବୁଲୁଛି କିଏ ତାର ବାପ ମା' ।

ଶେଷରେ ଗୌନ୍ତିଆଙ୍କୁ ପ୍ରଶ୍ନ କଲା କୁସୁମୀ । ବାପା ! ମୋର ବାପ ମା' କିଏ ? ମୁଁ କାହାର ଝିଅ ?

ଗୌନ୍ତିଆ ତାକୁ ଭୁଲାଇ ପାରିଲେ ନାହିଁ ।

ସତ କହିଲେ ।

ବୁଝାଇ ଦେଲେ ।

କୁସୁମୀ କହିଲା, ତୁମେ ମୋର ପାଳନ କର୍ତ୍ତା । ତୁମେ ମୋର ବାପା । ମୁଁ ଆଉ କାହାରିକୁ ଚିହ୍ନେନା । ମୁଁ ଠାକୁର ଗୌନ୍ତିଆଙ୍କର ଝିଅ । ଏହାହିଁ ମୋର ଶ୍ରେଷ୍ଠ ପରିଚୟ ।

ବାପା !

ବିଶ୍ୱାସ କର ।

ମୁଁ ଅନ୍ୟ କିଛି ଭାବୁ ନାହିଁ ।

ତୁମେ ମୋର ଜନ୍ମଦାତା । ଧର୍ମବୀର ମୋ ଭାଇ । ସାଧ-ବାଣୀ ମୋର ଭାଉଜ । ଫୁଲରାଣୀ ମୋର ଏକମାତ୍ର ସାନ ଭଉଣୀ । ଏହି ପରିଚୟ ନେଇ ମୁଁ ଜୀବନ ବିତାଇ ଦେବି ।

ଗୌନ୍ତିଆ କହିଲେ, ସତ କହୁଚୁ ଝିଅ । ତୁ ମୋର, ମୋ ଝିଅ । ସତ କହୁଚୁ ମା···ତୋ ମନରେ ଆଉ କିଛି କଥା ନାହିଁ ।

ନା ।

—ମିଛ କହୁ ନାହୁଁ ତ ।

—ବାପା ! ଜନ୍ମଦାତା ବଡ଼ ନୁହେଁ, ପାଳନକର୍ତ୍ତା ହିଁ ବଡ଼ । ଜାଣେନା କେଉଁ ଅଭାଗିନୀ କି ପ୍ରକାର ପରିସ୍ଥିତିରେ ପଡ଼ି ମତେ ବଣରେ ଫିଙ୍ଗି ଦେଇ ଯାଇଥିଲା । ଜାଣିନି କିଏ ମୋର ପିତା । ବୁଝେନା ପାପର ସ୍ମାରକୀ ନେଇ ମୁଁ ଏ ଧରଣୀରେ ଜନ୍ମଲାଭ କରିଛି । ଅନେକ ଭାବିଛି ।

ଅନେକ ରାତି ଅନିଦ୍ରାରେ ବିତାଇଛି ଚିନ୍ତାର ତାର ଗଣି ଗଣି କୂଳ ପାଇନି, କିନାର ପାଇ ନାହିଁ । ମୋ ଆଖିରେ ଯେଉଁ ଦେବତାଙ୍କ ରୂପ ଭସି ଉଠିଛି ସେ କିଏ ଜାଣିଛ ବାପା ?

—କିଏ ମା ?

—ତୁମେ !

—ଝିଅ ମୋର ।

—ସତ କହୁଛି ବାପା···ମୋ ମନରେ ଅନ୍ୟକିଛି ଭବନା ନାହିଁ । ଯିଏ ଯାହା କହୁଛି କହୁ ତୁମକୁ ମୁଁ ସନ୍‌ମାନ ନ ଦେଇ ରହି ପାରିବି ନାହିଁ ।

ମୁଁ ଠାକୁର ଗୌନ୍ତଆଙ୍କ ଝିଅ ।

ଏହା ମୋର ଶ୍ରେଷ୍ଠ ପରିଚୟ ।

ଠାକୁର ଗୌନ୍ତଆ ମନ୍ତ୍ରମୁଗ୍‌ଧ ସର୍ପ ପରି ଅନାଇ ରହି-ଥିଲେ କୁସୁମୀକୁ । ରୂପ ଯେମିତି ଗୁଣ ସେମିତି ।

ଗୌନ୍ତଆ ଘରକୁ ପଶିଗଲେ । ଟଙ୍କା ଖୋଲି କେତୋଟି ଅଳଙ୍କାର ଆଣି କୁସୁମୀକୁ ଦେଇ କହିଲେ, ଦେଖିଲୁ ମା' ଏସବୁ ତୋ ପାଇଁ ତିଆରି କରାଇଛି । ପିନ୍ଧଲୁ, ଦେଖେଁ କିମିତି ମାନୁଛି ।

ଲାଜୁଆ କଣ୍ଠରେ କୁସୁମୀ ମନା କରିଦେଲା ।

ନାହିଁ—ନାହିଁ ! ଆଜି ଥାଉ ପରେ ପିନ୍ଧବି । ନା ।

ଗୌନ୍ତଆ ହସିଲେ । ଝିଅ ମୁଣ୍ଡରେ ହାତ ବୁଲାଇଲେ ! କହିଲେ ଆରେ ବୁଢୀ ଲାଜ କାହିଁକି କରୁଛୁ । ମୁଁ ଯେ ତୋର ବାପ ।

ତୋର ଯାହା ଦରକାର ମତେ କହିବୁ । ମୁଁ କିଣିଦେବି । ମୁଁ ଆଣିଦେବି । ତୋ ମନ ମାନିଲେ ରଖିବୁ । ନୋହିଲେ ପାଲଟାଇ ଆଣିବି । ପିନ୍ଧ ଦେଖ । ଠିକ୍ ହେଉଛି କି ନାହିଁ ।

କୁସୁମୀ ଅବାଧ୍ୟ ହେଲା ନାହିଁ ।

ବୋହୂ ସାଧବାଣୀ ତାକୁ ଅଳଙ୍କାର ଗୁଡକ ପିନ୍ଧାଇ ଦେଲା । ଗୌନ୍ତିଆ ହସି ହସି ବାହାରକୁ ଚାଲିଗଲେ ।

ସାଧବାଣୀ ସୁନ୍ଦର ଭାବେ ସଜାଇଦେଲା କୁସୁମୀକୁ । କହିଲା, ସତରେ ନଣନ୍ଦ ! ତୁମକୁ ଦେଖିଲେ ଆଖି ଫେରଉ ହେଉନାହିଁ । କିଏ କହିବ ତୁମେ ଜଣେ ସାଧାରଣ ଲୋକର ଝିଅ ବୋଲି । କେଉଁ ଦେଶର ରାଜକନ୍ୟା ନିଶ୍ଚୟ । କୁସୁମୀ ଲାଜେଇ ହେଲା ।

ଯାଃ ତୁମେ ଭରି ଦୁଷ୍ଟ ହେଲଣି ଭଉଜ । ସତରେ ମୁଁ କଣ ଏତେ ସୁନ୍ଦରୀ !

—ଖାଲି ସୁନ୍ଦରୀ ନୁହେଁତ ଶ୍ରେଷ୍ଠ ସୁନ୍ଦରୀ । ଜାଣେନା ତୁମେ କାହା କପାଳରେ ଅଛ । କିଏ ତୁମକୁ ନେଇ ଘର କରିବ କେଜାଣି । ମର୍ତ୍ତ୍ୟର ମଣିଷ ପାଇଁ ତୁମର ରୂପ ନୁହେଁ । ସ୍ୱର୍ଗର ଦେବତା ଯୋଗ୍ୟ ସିନା ।

କୁସୁମୀ ହସେ । ଲାଜେଇ ମୁହଁ ଲୁଚାଏ । ଯୌବନ ବନରେ ମନ କୋଇଲି ଗାଏ । କଳ୍ପନା ରାଜ୍ୟରେ ଝଡ଼ ବହେ ଆଶାର ଆକାଶରେ ଘୋଟିଯାଏ ଅଦିନିଆଁ ମେଘ ।

କିଏ ମୋ ଜୀବନର ସାଥୀହେବ ।

କେଉଁଠି ତା ଘର ।

କିମିତି ରୂପ ତାର ।

ତା ନାମଟି କ'ଣ ?

ଦେବତା କାହିଁକି, ମର୍ତ୍ତ୍ୟର ମାନବୀକୁ ବିବାହ କରିବାକୁ ଧାଇଁ ଆସିବେ । ମୋ ରୂପ ସୁନ୍ଦର ହୋଇପାରେ···ମେନକା କି ଶଚୀ ରାଣୀଙ୍କ ଠାରୁ ଅଧିକ ନୁହେଁ ।

ଭାଉଜ ମିଛ କହୁଛନ୍ତି ।

ମୁଁ ସତେକି ଏତେ ସୁନ୍ଦରୀ ।

ବାପା ବହୁସ୍ଥାନରୁ ପାତ୍ର ଦେଖି ଫେରିଲେଣି । ତାଙ୍କ ମନ ମାନୁନାହିଁ, ଆଉ କ'ଣ ସ୍ୱର୍ଗରୁ ଦେବତାକୁ ବାଛିବେ ।

—ଭାଉଜ !

—କ'ଣ ।

—କେଶବନ୍ଧା ସେତିକି ଥାଉ ।

—ନା' ରୁହ, କେଶ ବାନ୍ଧିଦିଏ ।

—ତୁମେ ଭରି ଫୁଲେଇ ।

—ତୁମଠୁଁ ଅଧିକ ନୁହେଁ ।

—ଗୋଟାଏ କଥା କହିବି ?

—କୁହ ।

—ମୋପାଇଁ ବର ମିଳୁ ନାହାନ୍ତି । ବାପା, ଭାଇ ଖୋଜି ଖୋଜି ହାଲିଆ ହେଲେଣି । କିପରି ବର ସେ ଖୋଜୁଛନ୍ତି ଭାଉଜ ?

ସାଧବାଣୀ କହିଲା; ରୂପରେ ସୁନ୍ଦର ଗୁଣରେ ସୁନ୍ଦର ଧନରେ ବଡ଼ ପାଠ ପଢାରେ ବଡ।

ସବୁଥିରେ ବଡ଼ ନା ?

—ହଁ ।

—ଯଦି ନ ମିଳନ୍ତି ?

ନ ମିଳିବେ କାହିଁକି ମ। ତୁମକୁ ଦେଖିଲେତ ବରପାତ୍ର ଏକାଥରକେ ଭେଳ ହୋଇଯିବ ।

—ବାପାଙ୍କ ମନରେ ଶାନ୍ତ ନାହିଁ ।

—ଝିଅ ବୋଝ ଭରି ଗରୁ ।

—ହଁ ! ଝିଅ ବୋଝ ଭରିଗରୁ । ଆଜି କାଲିତ ବର-ପାତ୍ରକୁ ଟଙ୍କା ଦ୍ୱାରା ଖର୍ଚ୍ଚ କରାଯାଉଛି ।

—ସତେତ !

—ଜ୍ୱାଇଁ କିଲେ ହଜାରେ ।

—କୁସୁମୀ ।

—ହଁ ।

—ଏ ସମାଜକୁ ଏ ପ୍ରକାର ବିଷ ଗ୍ରାସକଲା କାହିଁକି ?

—ପଇସାବାଲା ଲୋକଙ୍କ ପାଇଁ । ସେମାନେ ଅଧିକ ପଇସାର ମାଲିକ ହୋଇଥିବାରୁ ଝିଅ ଜ୍ୱାଇଁଙ୍କ ମନ ମୁତାବକ ଯୌତୁକ ଦେଲେ । କିଏ ଦେଲା ପଚ୍ଚଶ ହଜାର ଆଉ କିଏ

ତା ସମ୍ମାନ ବଢ଼ାଇବା ପାଇଁ ଦେଲା ସତୁରି ହଜାର । ଏହି ପ୍ରଭବ ମଧ୍ୟବିତ୍ତ ପରିବାର ଉପଯୁକ୍ତ ଲୋକମାନଙ୍କ ଉପରେ ପଡ଼ିଲା । ସେମାନଙ୍କ ମଧ୍ୟରେ ଚାଲିଲା ଯୌତୁକ ଦେବାପାଇଁ ପ୍ରତିଯୋଗିତା । ତାଙ୍କ ତଳର ଲୋକମାନେ ମଧ୍ୟ ଏହି ଯୌତୁକ ରୋଗର ଶିକାର ହେଲେ । ବର୍ତ୍ତମାନ ଯୌତୁକ ବ୍ୟାଧି ସମଗ୍ର ସମାଜକୁ ଗ୍ରାସକରି ସାରିଲାଣି ।

—ଏହାର ଶେଷ ପରିଣତି କ'ଣ ହେବ ?

—ମୁଁ କହି ପାରିବି ନାହିଁ । ସରକାର ଆଇନ ପ୍ରଣୟନ କରିଛନ୍ତି । ତାକୁ ମାନୁଛି କିଏ । ସମସ୍ତେ ମାନିଲେ ହୁଅନ୍ତା ସିନା । ସମ୍ବାଦ ପତ୍ରରେ ପ୍ରକାଶ ପାଉଛି କେଉଁ ବୋହୂ ଦେହରେ ପେଟ୍ରୋଲ୍ ଢାଳି ନିଆ ଲଗାଇ ମଲାଣିତ ଆଉ କେଉଁ ଝିଅ ଯୌତୁକ ଦେଇ ନପାରି ଗଳାରେ ରଶି ଲଗାଇ ମରିଛି । କେଉଁଠି ସ୍ୱାମୀ ଶାଶୁ ଓ ଶ୍ୱଶୁର ବୋହୂ ଯୌତୁକ କମ୍ ଆଣି ଥିବାରୁ ତାକୁ ମାରି ଦେଉଛନ୍ତି ।

ଝିଅ ଶିକ୍ଷିତ ହୋଇ ନ ଥାଉ ।

ଗୁଣବତୀ ନ ହୋଇ ଥାଉ ।

ରୂପସୀ ନ ହୋଇ ଥାଉ ।

ଘର କରଣା କରିବାର କ୍ଷମତା ନ ଥାଉ । ତଥାପି ସେ ଭଲ ଘର ପାଇବ । ଯଦି ତା ବାପ ଦେଇ ପାରିବ ଚଢ଼ା ଯୌତୁକ । ଯୌତୁକ ସହିତ ବରପାତ୍ରର ଓଜନ ହୋଇ ଖର୍ଚ୍ଚ ଚାଲିଛି । ସାଧବାଣୀ ଗ୍ରାମଗଣ୍ଡାର ଝିଅ । ସେ ଏତେ ଆଇନ କାନୁନ ବୁଝେନା । ଜ୍ୱାଇଁ ଶ୍ୱଶୁର ଘରର ଶ୍ରେଷ୍ଠ ଅତିଥି ।

କିନ୍ତୁ ମୋର ଜଣେ ବାନ୍ଧବୀ କହୁଥିଲା ତା ଭିଶୋଇଙ୍କୁ ସେ ଥଟ୍ଟାରେ କହିଲା, ତୁମକୁ ମୋ ବାପା ଓଜନ କରି କିଣି-ଛନ୍ତି । ତୁମେ ନେଇଛ ଚାଳିଶ ହଜାର ପାଞ୍ଚଶହ । ତୁମ ଓଜନ ଏକଚାଳିଶ କିଲୋ । ଏଣୁ ତୁମେ ମୋ ଅପାର କ୍ରୀତଦାସ ।

ତାପରେ ?

—ତାପରେ ଭିଶୋଇ ମହାଶୟ ରାଗରେ ପାଚି ଲାଲ ହୋଇଗଲେ । ଏତେବଡ ଅପମାନ ସହ୍ୟ କରି ପାରିଲେ ନାହିଁ । ସଙ୍ଗେ ସଙ୍ଗେ ଘରକୁ ଯାଇ ଟଙ୍କା ଆଣି ଶ୍ୱଶୁରଙ୍କୁ ଫେରାଇ ଦେଇ କହିଲେ ଯୌତୁକ ନେବାର ଭବ ପାଇଲି ।

ହସି ହସି ସାଧବାଣୀ କହିଲା ଠିକ୍ ହୋଇଛି । ଯେମିତି ଶାଳୀ କି ସେମିତି ଭିଶୋଇ ।

କୁସୁମୀ କହିଲା, ତୁମେ ମରୁଆକୁ ଚିହ୍ନିଥିବ ଭଉଜ ?

—ହଁ, ତୁମ ସାଙ୍ଗତ ?

—ହଁ ।

—ତାର କ'ଣ ବାହାଘର ସରିଲାଣି ?

—ହଁ ।

—କେବେ ମ ?

—ଦି ବର୍ଷ ହେଲାଣି ।

—ତାର ପୁଣି କ'ଣ ହେଲା ।

କୁସୁମୀ କହିଲା, ମୁଁ ତା ବାହାଘରକୁ ଯାଇଥିଲି । ଭୋର ସକାଳେ ତା ବର ବାଣ ଫୁଟାଇ ବାଜା ବଜାଇ ରୋଷଣୀ କରି

ଆସିଲା । ଲୋକେ କହୁଥାନ୍ତି ବାଜା, ବାଣ ରୋଷଣୀ ସବୁ ଝିଅଘର ଟଙ୍କାରେ ହେଉଛି । ଏହି ଖର୍ଚ୍ଚକୁ ବାଟଖର୍ଚ୍ଚ କହନ୍ତି ।

ବାହାଘର ଆରମ୍ଭ ହେଲା । ବେଦୀ ଉପରେ ବରକନ୍ୟା ବସିଥାନ୍ତି । ହାତଗଣ୍ଠି ପଡ଼ିବା ପୂର୍ବରୁ ବର ପିତା ଚୁକ୍ତି ମୁତାବକ ଟଙ୍କା ଦାବିକରି ବସିଲେ । କନ୍ୟା ପିତା ଦଶ ହଜାରେ ଟଙ୍କା ମୋଟର ସାଇକେଲ ପାଇଁ ଦେଲେ ।

ବାହାଘର ଶେଷ ହେଲା ।

ମରୁଆର ଆଈମା' ଦେଖିପାରେ ନାହିଁ । ଜ୍ୱାଇଁ ଦେଖିବାକୁ ଅଣ୍ଟାଳି ଅଣ୍ଟାଳି ଆସିଲା । ମରୁଆର ସାନଭଉଣୀ ସେଫାଲି ବୁଢ଼ୀକୁ ଧରି ଜ୍ୱାଇଁ ନିକଟରେ ପହଞ୍ଚାଇ ଦେଲା । ବୁଢ଼ୀ ଜ୍ୱାଇଁ ଦେହରେ ହାତ ବୁଲାଉ ବୁଲାଉ କହିଲା, ଏତେ ଗୁଡ଼ାଏ ଟଙ୍କା ଦେଇ ମୋ ପୁଅ ଏହି ଦୋଗଲା ପତଳା ଜ୍ୱାଇଁଟିଏ କିଣିଲା । ହଇରେ ପୁଅ···ଏ ଜ୍ୱାଇଁତ ଏତେ ଟଙ୍କାର ନୁହେଁରେ । ପାଞ୍ଚ ହଜାର ନ ଦେଇ ଦଶ ହଜାର ଦେଲୁ କାହିଁକି । ଠିକି ଗଲୁରେ ପୁଅ ନାତୁଣୀକୁ ମୋର ବୁଡ଼ାଇ ମାରିଲୁ । ଆଈ ବୁଢ଼ୀର ଏତିକି କଥାରେ ବର ଓ ବରଯାତ୍ରୀମାନେ ରାଗିଗଲେ । ତାତିଗଲେ ବରପିତା, ସଙ୍ଗେ ସଙ୍ଗେ ଟଙ୍କା ବିଡ଼ାଟା କନ୍ୟା ପିତାଙ୍କ ହାତରେ ଦେଇ କହିଲେ, ସମୁଦି ! ମୋର ଯୌତୁକ ଦରକାର ନାହିଁ । ବୋହୂଟିଏ ପାଇଲି ସେହି ମୋର ଆନନ୍ଦ । ତୁମ ବୋଉ ଯାହା କହିଲେ, ମୁଁ ଉଚିତ ଶିକ୍ଷା ପାଇଗଲି । ତୁମ ବୋଉ ମୋ ପୁଅକୁ ଟଙ୍କା ଦ୍ୱାରା କିଣିବା କଥା କହିଲେ । ଏହା ସହିବାଠାରୁ ମରିଯିବା ଭଲ ।

ସାଧବାଣୀ ଆହୁରି ହସିଲା ।

କହିଲା ଠିକ୍ ହୋଇଛି ।

ଭଲ ହୋଇଛି । ବାପ ରଖିଲାପରି ହଜାର ହଜାର ଟଙ୍କା ଦାବି କରି ପକାଉଛନ୍ତି । ସତେ ଯେପରି ଝିଅଗୁଡାକ ତାଙ୍କ ମା' ଜାତିର ନୁହଁନ୍ତି । ସାଧବାଣୀ କୁସୁମୀ କଥାରେ ଏକମତ ହୋଇ କହିଲା, ଯୌତୁକ ଦେବା ନବା ଯଦି ଅପରାଧ, ସରକାର ସେମାନଙ୍କୁ ଶାସ୍ତି ଦେଉ ନାହାନ୍ତି କାହିଁକି ? କୁସୁମୀ କହିଲା, ସେ ପ୍ରକାର ଆଇନ ହୋଇ ଯାଇଛି ମ ଭଉଜ ! ତେବେ ଆମେ ଯଦି ସଚେତନ ନ ହେବା ସରକାର କେତେ ଜଗିବେ । ଯାହାଦ୍ୱାରା ସମାଜ କଳଙ୍କିତ ହେଉଛି ତାହା ଯଦି ଆମେ ସମାଧାନ ନ କରିବା, ତେବେ କରିବ କିଏ ?

କେଶ ପ୍ରସାଧନ ଶେଷ ହେଲା ।

ସାଧବାଣୀ କୁସୁମୀକୁ କୁଙ୍କୁମ ପିନ୍ଧାଇସାରି କହିଲେ ଏଥର ଯାଅ ବଗିଚ୍ଚରେ ବୁଲି ଫୁଲ ତୋଳିବ । ଆଜି କୁମାର ପୂର୍ଣ୍ଣିମା । ରାତିକି ଚନ୍ଦ ବନ୍ଦାପନା ହେବ । ନାଚ ତାମଶା ମଧ୍ୟ ହେବ । ସାଥୀ ଝିଅମାନେ ଡ଼ାକି ଡ଼ାକି ଫେରି ଗଲେଣି ।

—ଭାଇ କେଉ ଆଡେ଼ ଗଲେକି ଭଉଜ ?

—କେଜାଣି ।

—ଆଜି ରାତିରେ ଶିକାରକୁ ଯିବେ ପରା ।

—ନା । ସରକାର ବାରଣ କରିଛନ୍ତି । ଜଙ୍ଗଲରୁ ଗଛକଟା ବନ୍ଦ କରିଛନ୍ତି । ପଶୁ–ପକ୍ଷୀ ମାରିବା ବନ୍ଦ । ଆଚ୍ଛା କୁସୁମୀ ! ତୁମେତ ପାଠ ପଢିଛ । ରେଡ଼ଓ ଶୁଣୁଛ । ଖବର

କାଗଜ ପଢ଼ୁଛ । ସବୁ ଜାଣିଛ । କହିଲ ଦେଖି ସରକାର ଏ ପ୍ରକାର ଆଇନ କରିଛନ୍ତି କାହିଁକି ?

କୁସୁମୀ କହିଲା; ପ୍ରଚୁର ପରିମାଣରେ ପଶୁ ଶିକାର କରିବା ଦ୍ୱାରା ପଶୁ ସମ୍ପଦ ଲୋପ୍ ପାଇ ଯାଉଛି । ଏହା ଦ୍ୱାରା ଆମ ଦେଶର କ୍ଷତି ହେଉଛି । ଗଛ କାଟିବା ଦ୍ୱାରା ଧୋଇ, ମରୁଡ଼ି ହେବା ସଙ୍ଗେ ସଙ୍ଗେ ମାନବ ସମାଜର କ୍ଷତି ହେଉଅଛି ।

—ସତେ !

—ହଁ ।

—ହଉ ତୁମେ ଯାଅ । ମୁଁ ତେଣେ ଗେଷେଇ କରେ । ସାଧବାଣୀ ଚାଲିଗଲା ।

କୁସୁମୀ ଫୁଲ ଝୁଡ଼ିଧରି ବଗିଚାକୁ ଚାଲିଗଲା । ସମୟ ଅପରାହ୍ଣ । ସଖି ଝିଅମାନେ ପହଞ୍ଚିଲେ । ଘରଠାରୁ କିଛି ଦୂରରେ ବଗିଚା । ସାଥୀ ଝିଅମାନେ ଫୁଲ ତୋଳି ଚାଲିଲେ । ଏକା ଏକା ବସିଛି କୁସୁମୀ । ମନରେ ଭାବନାର ବନ୍ୟା । ଯୌବନରେ ପାଦ ଦେଲାପରି ତା ମନରେ କେବେ ପରି-ବର୍ତ୍ତନ ଦେଖାଦେଇ ନଥିଲା । ଏଇ କେଇ ଦିନ ଭିତରେ କୁସୁମୀ ଏ ଦୁନିଆକୁ ନୂଆ ରୂପରେ ଦେଖୁଛି ।

ସେ ଖୋଜୁଛି ଜଣେ ସାଥୀକୁ ।

ସାଥୀ ।

ଜୀବନ ସାଥୀ ।

ଯୁବ ସାଥୀ ।

ସାଥିଟିଏ ପାଇବାର ମୋହ ତାଙ୍କୁ କବଳିତ କରି ପକାଇଛି । ସେ ଖୋଜୁଛି ମନର ମଣିଷଟିଏ । ଖୋଜୁଛି ମନର ମଣ୍ଟୁରଟିଏ । ବାପା ଭାଇ ଏବଂ ଅନ୍ୟମାନେ ଅନେକଥର ବ୍ୟର୍ଥ ହେଲେଣି । ଯେଉଁଠି ଘର ଅଛି ସେଠି ବର ମିଳୁନି । ଯେଉଁଠି ବର ଭଲ ସମ୍ପତ୍ତି ନାହିଁ । ଏହା ଫଳରେ ଠାକୁର ଗୌନ୍ତିଆ ହତାଶରେ ପଡଛନ୍ତି । ଚିନ୍ତାରେ ଦିନ କାଟୁଛନ୍ତି । ବଣ ଜଙ୍ଗଲ ଘେର ଗାଁଟିକୁ ସଭ୍ୟ ସମାଜର ଆଲୋକ ଅନେକ ଦିନଠାରୁ ପ୍ରବେଶ କରିଛି । ଗାଁଠାରୁ ଅଳ୍ପ ଦୂରରେ ସ୍କୁଲ୍, କଲେଜ, ଫରେଷ୍ଟ ଅଫିସ, ତହସିଲ ଓ ବ୍ଲକ ଅଫିସ । ତା ପାଖରେ ଥାନା ଓ ଡାକ୍ତରଖାନା । ଠାକୁର ଗୌନ୍ତିଆ ଏହି ସଂସ୍ଥାମାନଙ୍କୁ ବାଦଦେଇ ନାହାନ୍ତି । କୁସୁମୀ ପାଇଁ ଜଣେ ଚାକିରୀ କରୁଥିବା ପାତ୍ର ଖୋଜିଛନ୍ତି, ଯେଉଁକଥା ପଡଛି ଯୌତୁକ ରାକ୍ଷସଟା ତାଙ୍କୁ ଗ୍ରାସ କରିବାକୁ ଧାଇଁ ଆସିଛି । ସେଥିପାଇଁ ତାଙ୍କର ଭୟ ଯଦିଓ ନାହିଁ । ତଥାପି ଶକ୍ତିକୁ ଚାହିଁ ତ ଦେବେ ସରକାରୀ ଚାକିରୀ କରୁଥିବା ପାତ୍ରଟିର ଦାବି ତିରିଶ ହଜାର ଚାଳିଶୀ ହଜାର ଆଉ ପଚାଶ ହଜାର ।

ହଜାର-ହଜାର ।

ପାନ ନୁହେଁକି ଇଟା ପଥର ନୁହେ ।

ଟଙ୍କା ।

ଟଙ୍କାର ହିସାବ ।

ଗୌନ୍ତିଆ ହାରି ଯାଆନ୍ତି ।

ଏତେ ଟଙ୍କା ଦେବାର ଶକ୍ତି ତାଙ୍କର ନାହିଁ ତ ସମ୍ବନ୍ଧ ସ୍ଥିର କରିପାରି ନାହାନ୍ତି ।

କନ୍ୟା ବୋଝ ଯିଏ ବହନ କରିଛି ସେହି ଜାଣେ ସେ ବୋଝର ଭର କେତେ ଯନ୍ତ୍ରଣା ଦାୟକ ।

କୁସୁମୀ ବେଳେବେଳେ ଭାବେ ବାପାର ବୋଝ ନହୋଇ ଶୀଘ୍ର ବିବାହ କରି ଗଲେ ଅନ୍ତତଃ ବାପା ଖୁସି ହେବେ ।

ବିବାହ ଲଗ୍ନ ତ କାହାରି ହାତର କଥା ନୁହେଁ ।

ଈଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ କିଏ କଣ କରିବ !

ସନ୍ଧ୍ୟା ଆଗତ ପ୍ରାୟ ।

କୁସୁମୀ ଏକା ଏକା ବଗିଚ୍ଛଟିରେ ବସିଛି ।

ଘରକୁ ଫେରିବାର ସମୟ ଉପସ୍ଥିତ ହୋଇଛି ସେଆଡ଼କୁ ତାର ନଜର ନାହିଁ ।

ସୂର୍ଯ୍ୟଦେବତା ପଶ୍ଚିମ ଆକାଶରେ ଲୁଚି ଯାଉଛନ୍ତି । ନୀଡ ଫେରା ବିହଙ୍ଗ ଦଳ ନାନା ପ୍ରକାର କଳରବ କରି ଡେଣା ଝାଡି ଉଡ଼ି ଆସୁଛନ୍ତି । ଭାବନା ବାଦଲ ଅପସରିଗଲା କୁସୁମୀର ସେ ଉଠିଗଲା । ଦେଖିଲା ଜଣେ ଯୁବକ ଚାଲିଛନ୍ତି ସାଇକେଲ-ରେ । ଆଗରୁ ଆସୁଥିବା ଟ୍ରକ୍‌ଟି ତାଙ୍କୁ ଧକ୍‌କା ଦେଲା । ସେ କିଛି ଦୂରରେ ଛିଟିକି ପଡିଲେ । ଟ୍ରକ୍ ଚାଳକ ଗାଡ଼ିର ଗତି ବଢାଇ ଦେଲା ।ଯୁବକ ଜଣକ ଚୈତନ୍ୟ ହରାଇ ପଡିଥାନ୍ତି । ମୁଣ୍ଡରୁ ରକ୍ତସ୍ରାବ ହେଉଥାଏ । କୁସୁମୀ ପାଟିକରି ଡାକ ଛାଡ଼ିଲା । ଦୌଡ଼ି ଆସିଲେ ଧର୍ମବୀର ଓ ଅନ୍ୟମାନେ ।

ଠାକୁର ଗୌନ୍ତିଆ ଆଦେଶ ଦେଲେ ତାଙ୍କୁ ଘରକୁ ନେଇ ଯାଅ । କବିରାଜଙ୍କୁ ଡ଼ାକିଆଣ ।

ଧର୍ମବୀର ଯୁବକଙ୍କୁ ଘରକୁ ବୋହିନେଲେ । ଆନୁସଙ୍ଗିକ ଯତ୍ନ ପରେ କବିରାଜଙ୍କୁ ଡ଼କାଗଲା । ଗୌନ୍ତିଆ ଜାଣିଲେ ଆଘାତ ପ୍ରାପ୍ତ ଯୁବକ ଜଣେ କ୍ଲର୍କ । ସେ ସ୍ଥାନୀୟ କୃଷି ସଂସ୍ଥାରେ କାର୍ଯ୍ୟ କରନ୍ତି । ଦୂରଦୃଷ୍ଟି ରଖି ଗୌନ୍ତିଆ ଯୁବକଙ୍କର ସେବା କରିବା ପାଇଁ କୁସୁମୀକୁ ଆଦେଶ ଦେଲେ ।

କୁସୁମୀ ଯୁବକଙ୍କ ସେବାରେ ନିୟୋଜିତ ହେଲା । ରାତି ବାରଟା ପରେ ଯୁବକ ଚେତନା ଫେରି ପାଇଲେ । ଆଖି ଖୋଲିଲେ, ଦେଖିଲେ ତାଙ୍କଠାରୁ କିଛି ଦୂରରେ ଜଣେ ସୁନ୍ଦରୀ ଯୁବତୀ ତାଙ୍କରି ଆଡ଼କୁ ଚାହିଁ ରହିଛି । ଆଖିରେ ଲୁହ । ବାହାରେ କୁଆଁରୀ ପୁନେଇ ରାତିର ମହୋତ୍ସବ ।

ସରଗ ଛାତିରେ ହସକୁଳି ଜହ୍ନ ।

ଟୋପା ଜହ୍ନର ରୂପେଲି ଜୋଛନାରେ ରଜନୀ ରାଣୀର ଅଙ୍ଗଲତା ହସି ଉଠୁଛି । ଶୁଣା ଯାଉଛି ଯୁବତୀ ଝିଅମାନଙ୍କ କଣ୍ଠର ମଧୁର ପଲ୍ଲୀ ସଂଗୀତ ।

କୁଆଁର ପୁନେଇ ଜହ୍ନଗୋ ଫୁଲ ବଉଳ ବେଣୀ···

ନୂଆ ଶାଢ଼ୀ ପିନ୍ଧିନାହିଁ କୁସୁମୀ । ଯୋଗ ଦେଇ ନାହିଁ ସାଥୀ ଝିଅମାନଙ୍କ ସହିତ କପାଳରେ ପିନ୍ଧିନାହିଁ ଚନ୍ଦନ ।
ଗୋରା ଦେହରେ ତାର ନାହିଁ ନୀଳ ରଙ୍ଗର ଶାଢ଼ୀ । ଦିନ ବେଳେ ଉଉଜ ଅଳଙ୍କାର ପିନ୍ଧାଇ ଦେଇଥିଲେ । କେଶ ବାନ୍ଧି ଦେଇ ଥିଲେ ! ନିଜେ ଫୁଲ ତୋଳିଲା ବେଳେ

ଗଭରେ ଖୋସି ନେଇଥିଲା ବାଛା ଫୁଲଟିଏ । ବାସ ମାତ୍ର ଏତିକିରେ ସେ ଦେଖା ଯାଉଥିଲା ସ୍ୱର୍ଗର ପରୀଟିଏ ପରି ।

ଯୁବକ ଶଯ୍ୟାରେ ଥାଇ ଦେଖୁଥିଲେ କୁସୁମୀକୁ । ଭାବୁଥିଲେ, କିଏ ଏହି ଯୁବତୀ ?

ଏତେ ରୂପନେଇ ମରତ ମାଟିରେ ଜଣେ ମାନବୀ ଜନ୍ମ ଲାଭ କରିଛି । ମୁଁ କେଉଁଠି ।

ଏଟା ତ ଡାକ୍ତରଖାନା ନୁହେଁ ।

ଯୁବକ ମନରୁ ସନ୍ଦେହ ଦୂର କରିଦେବା ପାଇଁ କୁସୁମୀ କହିଲା, ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ ମହାଶୟ । ଟ୍ରକ୍ ଦୁର୍ଘଟଣାରେ ଆପଣ ଆହତ ହେଲାପରେ ଚେତନା ହରାଇଥିଲେ । ମୁଁ ପାଟିକରି ଡକିଲି । ମୋ ବାପା ଭାଇ ଆପଣଙ୍କୁ ଏଠାକୁ ନେଇ ଆସିଲେ । ଯେତିକି ଚିକିତ୍ସା କରାଯାଇଛି ଯଥେଷ୍ଟ । ଭୟର ଲେଶ ମାତ୍ର କାରଣ ନାହିଁ । କିପରି ଲାଗୁଛି କୁହନ୍ତୁ ତ ?

କୋକିଳ କଣ୍ଠି କୁସୁମୀର ମଧୁର କଥାରେ ମୁଗ୍ଧ ହୋଇଗଲେ ଯୁବକ । କହିଲେ ହଁ, ଦେହ ଭଲ ଲାଗୁଛି ।

—ଆପଣଙ୍କ ନାମଟା····

—ପ୍ରିୟ ରଞ୍ଜନ !

—ଭଲ ।

—କ'ଣ ?

—ନାମଟି ।

—ତୁମ ନାମ କ'ଣ ?

—କୁସୁମ ! ବାପା କୁସୁମୀ ଡାକିବାରୁ ଗାଁ ସାର ସେଇ ନାମରେ ଡାକନ୍ତି ।

—ଭଲ ।

—କ'ଣ ।

—କୁସୁମ ନାମଟି ।

—ସାର ଠିକ୍ ଏଇ କଥା କହୁଥିଲେ ।

—କେଉଁ ସାର ।

—ମୋ ସ୍କୁଲ ହିନ୍ଦ ସାର୍ ।

—ତୁମେ ମୋର ଜୀବନ ବଞ୍ଚାଇଛ । ଏଥିପାଇଁ ମୁଁ ଋଣି । ତୁମକୁ ଧନ୍ୟବାଦ ଦେଉଛି ।

—ମୁଁ କେବଳ ମୋର କର୍ତ୍ତବ୍ୟ କରିଛି ।

—ଅନେକ କହନ୍ତି ମଣିଷ ବେଳେବେଳେ ଖିଆଲ ଖବରେ କର୍ତ୍ତବ୍ୟରେ ଅବହେଳା କରନ୍ତି ।

—ମଣିଷ ମୁଁ···ଯାହା କରିବା ଉଚିତ ନିଶ୍ଚୟ କରିବି ।

—ପଢ଼ିଛ ?

—ହଁ ।

କୁହ ।

—ମାଟ୍ରିକ୍ ଫେଲ୍ ।

—ଆଉ ଥରେ ଚେଷ୍ଟା କଲ ନାହିଁ ।

—ବାପା ପସନ୍ଦ କଲେ ନାହିଁ ।

ପ୍ରିୟରଞ୍ଜନ ଜାଣି ପାରିଲେ ରୂପସୀ କୁସୁମୀକୁ ଅଧିକ ସମୟ ବାହାରକୁ ଛାଡ଼ିବାକୁ ବାପା ପସନ୍ଦ କରି ନାହାନ୍ତି । ମନେ ଅଛି ଟ୍ରକ୍ ଧକ୍କା ହେଲାପରେ କୁସୁମୀ ତାଙ୍କୁ ପ୍ରଥମେ ଟୋକିଧରି ଚିତ୍କାର କରି ଉଠିଲା । ଏହି ସୁନ୍ଦରୀ ଉପକାରୀ ଯୁବତୀଟିର ମୁହଁ ଦେଖି ମୁଁ ବେହୋଶ ହୋଇ ପଡ଼ିଥିଲି । ଚେତନା ଫେରିବା ପରେ ଯେତେବେଳେ ଆଖି ଖୋଲିଲି ଦେଖୁଛି ତାହାରି ମୁହଁ ! ମନେହୁଏ ରାତି ଅଧରୁ ଅଧିକ ହୋଇଛି । ବାହାର ଦାଣ୍ଡରେ ଟୋକିଅମାନେ ନାଚ ଗୀତରେ ମାତିଛନ୍ତି ।

ଆଜି କୁମାର ପୂର୍ଣ୍ଣିମା ।

ଯୁବତୀ ଜୀବନର ପ୍ରତୀକ୍ଷିତ ରାତିଟିଏ ।

କୁସୁମୀ ଏତେବଡ଼ ପର୍ବ ପାଳନ କରିନାହିଁ ।

କେଶ ବିନ୍ୟାସରେ ନିଜକୁ ମଣ୍ଡିନାହିଁ ।

ମୋ ସେବାପାଇଁ ରାତି ଅନିଦ୍ରାରେ ବସିଛି । କଥା ଗୁଡ଼କ ବେଶ୍ ମାର୍ଜିତ । ପରିମାର୍ଜିତ ବ୍ୟବହାର ।

—କାହାର ଝିଅ ତୁମେ କୁସୁମୀ ?

—ଠାକୁର ଗୌନ୍ତିଆ ।

—ସତେ !

—ଭୟ ପାଇଲେ ଯେ ।

—ତାଙ୍କୁ ଆମ ଅଫିସର ସନ୍ମାନ ଦେବାର ଦେଖିଛି । ଶୁଣିଛି ସେ ଜଣେ ନ୍ୟାୟବନ୍ତ ଓ ଧାର୍ମିକ । ତୁମେ ତାଙ୍କରି ଝିଅ ।

—ହଁ ।

—ମୋର ···

—ଚିକିତ୍ସା ସେହି କରାଇଛନ୍ତି । ତାଙ୍କରି ଆଦେଶ ମୁଁ ପାଳନ କରୁଛି ।

—କୁସୁମୀ ।

—କୁହନ୍ତୁ ନା ।

—ଆଜି କୁମାର ପୂର୍ଣ୍ଣିମା ।

—ହଁ ।

—ତୁମ ସାଥୀ ଝିଅମାନେ····

—ନାଚ ଗୀତରେ ବ୍ୟସ୍ତ ।

—ତୁମେ ···

—ସବୁ ଏଠାକୁ ଶୁଣାଯାଉଛିତ । ତାଛଡ଼ା ସେବା ଏକ ଧର୍ମ ।

—ଏବେ ତୁମେ ଯାଇପାର । ମୋର ସେପରି କିଛି କ୍ଷତି ହୋଇ· ନାହିଁ । ଯାଅ, ସାଥୀମାନଙ୍କ ସହିତ ଖେଳରେ ଯୋଗଦିଅ ।

—ବେଶ୍ ତ ! ଆପଣ ଔଷଧ ଖାଇ ନିଅନ୍ତୁ ।

—ଦିଅ ।

କୁସୁମୀ ପ୍ରିୟରଞ୍ଜନଙ୍କୁ ଔଷଧ ଖୁଆଇ ଦେଲା ।
ଦୁଧ ଗ୍ଲାସଧରି କହିଲା, ପିଇନିଅନ୍ତୁ ।

ସୁନା ପିଲାଟି ପରି ଦୁଧ ପିଇଦେଲେ ରଞ୍ଜନ । ପହଞ୍ଚିଲା ଫୁଲରଣୀ । ନୂଆ ବେଶ ଭୂଷାରେ ସଜ୍ଜିତା ଫୁଲରଣୀକୁ

ଦେଖିଲେ ଆଖି ଫେରାଇ ଆଣି ହେବ ନାହିଁ । ସେ. ଖେଳ ଛାଡ଼ ଆସିଥିବାରୁ ଚଞ୍ଚଳ ହେଉଥିଲେ । କହିଲା, ତୁ ଏଇଠି ଏମିତି ଏ ବାବୁଙ୍କ ସେବା କରୁଥିବୁ ନା ତେଣିକି ଯିବୁ । ସମସ୍ତେ ତୋତେ ରହିଁ ବସିଛନ୍ତି ଯେ, ଆସିଲୁ ।

ଆରେ ଏ ବାବୁ ଭଲ ହୋଇ ଗଲେଣି ତ । ତାଙ୍କୁ କିଛି ଖାଇବାକୁ ଦେଇ ଦେ । ଔଷଧ ଦେଇ ଦେ ।

ଏକା ନିଶ୍ୱାସରେ ଏତେ ଗୁଡାଏ କହି ପକାଇ ଦମ୍ ନେଇ ନେଲା ଫୁଲରଣୀ । ଫାଜିଲି ଫୁଲରଣୀକୁ ଲକ୍ଷ କରି ପ୍ରିୟ-ରଞ୍ଜନ କହିଲେ, ତୁମ ଅପା ସବୁ ଦେଇଛନ୍ତି ମୁଁ ଖାଇ ସାରିଛି । ତୁମେ ମୋ ପାଇଁ କ'ଣ ଆଣିଛ ?

—ମୁଁ ? ନା, କିଛି ଆଣି ନାହିଁ ।

—ତୁମ ନା ?

—ଫୁଲରଣୀ ।

—ଫୁଲରଣୀ ।

—ଫୁଲରଣୀ, ମାନେ....

—ଫୁଲମାନଙ୍କ ମଧ୍ୟରେ ରଣୀ ।

—ତୁମ ରଜାଙ୍କ ନାମ କ'ଣ ?

ପ୍ରିୟ ରଞ୍ଜନଙ୍କର ଏହି ଓଜନଦାର ପ୍ରଶ୍ନରେ ଫୁଲରଣୀର ହସ ହସ ମୁହଁଟି କ୍ଷଣକ ମଧ୍ୟରେ ଶୁଖିଗଲା । ରଜାଙ୍କ ନାମ ? ମୋ ରଜାଙ୍କ ନାମ ?

ଏହାର ମାନେ କଣ ହୋଇପାରେ । ଲାଜରେ ଦୌଡ଼ ପଳାଇଲା ଫୁଲରଣୀ । ହସି ହସି କୁସୁମୀ କହିଲା ଭରି ଚଞ୍ଚଳ ।

ସବୁବେଳେ ହସୁଥିବ । ଏଣୁ ତେଣୁ ଗପୁଥିବ । ଏତେ ସରଳ ଯେ ଟିକକ କଥାରେ କାନ୍ଦ ପକାଇବ । ହଉ ଆପଣ ବିଶ୍ରାମ କରନ୍ତୁ । ମୁଁ ଆସୁଛି ।

—ଯାଅ ।

ଚାଲିଗଲା କୁସୁମୀ । ପ୍ରିୟରଞ୍ଜନ ତାକୁ ପ୍ରଶଂସା କରି-ବାକୁ ବାଧ୍ୟ ହେଲେ । ଆହୁରି ଧନ୍ୟବାଦ ଦେଲେ ଠାକୁର ଗୌନ୍ତିଆଙ୍କୁ । ବାପ ତାର ଯୁବତୀ ଝିଅକୁ ଜଣେ ପ୍ରାପ୍ତ ବୟସ୍କ ଯୁବକର ସେବା କରିବା ପାଇଁ ଛାଡ଼ଦେବା ବାସ୍ତବିକ····ଏ ଗତିରେ ।

ଠାକୁର ଗୌନ୍ତିଆ ଘର ଭିତରକୁ ପଶି ଆସିଲେ ।

—କିପରି ଅଛ ବାବୁ ?

—ଭଲ ! ନମସ୍କାର ।

—ଥାଉ ବାପ ଥାଉ ! ଆଜି ତୁମର ଗୋଟାଏ ଭିଷ୍ଟଥିଲା ଝିଅଟି ମୋର ତୁମକୁ ଉଠାଇ ନଥିଲେ ତୁମେ ଜୀବନରେ ନ ଥାନ୍ତ ।

ସବୁ ଭଗବାନଙ୍କର ମାୟା ।

ପ୍ରିୟରଞ୍ଜନ କହିଲେ, ଆପଣଙ୍କର ଏ ଋଣ ଏ ଜୀବନରେ ଶୁଝି ପାରିବି ନାହିଁ । ବାସ୍ତବିକ ଆପଣ ଦୟା ନ କରିଥିଲେ ମୁଁ ମରି ଯାଇଥାନ୍ତ । ଆପଣଙ୍କର ଦାନ ମୁଁ ଏକା କାହିଁକି ମୋ ବାପ-ମା' ମଧ୍ୟ ଶୁଝି ପାରିବେ ନାହିଁ । ଆପଣ ମହାନ ।

ଠାକୁର ଗୌନ୍ତିଆ ହସି ହସି କହିଲେ, ମୁଁ କିଛି ନୁହେଁ ବାପ ! ମୋ ଝିଅ ସବୁ କରିଛି । ତୁମ ମୁଣ୍ଡରେ ପଟି ଭିଡ଼ଛି

ତା ଶାଢ଼ୀ ପଣତ ଚିରି । ପାଟିରେ ତୁମର ପାଣି ସେହି ଦେଇଛି ମୁଁ କିଛି ପଇସା ଖର୍ଚ୍ଚ କରିଛି ସିନା କୁସୁମୀ ସେବା କରିଛି ।

ଏହିପରି ନାନା ପ୍ରକାର ଆଲୋଚନା ପ୍ରିୟରଞ୍ଜନଙ୍କ ସହିତ ହେଲା ଠାକୁର ଗୌନ୍ତଆଙ୍କର । ଗୌନ୍ତଆ ଜାଣିଥିଲେ ପ୍ରିୟ-ରଞ୍ଜନ ଅବିବାହିତ । ପ୍ରସ୍ତାବ ପକାଇବା ପାଇଁ ଆଶାକଲା ପରେ ବିଧାତା ତାର ବିଗ୍ଭର ଏପରି ଯେ ନିଜେ ବରପାତ୍ର ଆସି ତାଙ୍କରି ହାତ ମୁଠାରେ ହାଜର । କୁସୁମୀ ସହିତ ପ୍ରିୟରଞ୍ଜନଙ୍କର ମିଳନ ହେଲେ ଭଲ ହୁଅନ୍ତା । ଝିଅ ଯେମିତି ରୂପବତୀ ଜ୍ୱାଇଁ ସେମିତି ସୁନ୍ଦର ସ୍ୱାସ୍ଥ୍ୟବାନ ଯୁବକ । ଘର ଖବର ପାଇଁ ଗୌନ୍ତଆ କହିଲେ, ଘରେ କିଏ ଅଛନ୍ତି ।

—ବାପ-ମା' ଉତ୍ତର ଦେଲେ ପ୍ରିୟରଞ୍ଜନ ।

—ଜମି କେତେ ମାଣ ହେବ ।

—ଆଠ ଏକର ।

—କେତେ ପାଠ ପଢ଼ିଛ ମ ବାବୁ ।

—ବି. ଏ. ପାସ୍ କରିଛି ।

—ସତେ !

—ଚ୍ଛକିରୀ କରିବା ଏକ ବର୍ଷ ହୋଇ ଯାଇଛି ।

—ଶୁଣୁଥିଲି ବାହାଘର ହୋଇ ନାହିଁ ।

—ନା ।

—କନ୍ୟା ସ୍ଥିର ହୋଇଛି ?

—ବାବା ଜାଣନ୍ତି ।

—ଭଲ । ଏମିତି ବାପ—ମା'ଙ୍କ ଅଧିନରେ ରହିବା ଭଲ ଯୋଗ୍ୟ ତୁଅମାନେ ବାବା—ମା'ଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ଚଳନ୍ତୁ । ତାଙ୍କ ଅଜ୍ଞାତରେ କିଛି କରି ପକାଇବା ମୋତେ ଉଚିତ ନୁହେଁ ।

ମୁଁ ବାବାଙ୍କୁ ସନ୍ମାନ ଦିଏ । ଆଦେଶ ପାଳନ କରେ ତାଙ୍କର ।

—ଭଲ ! ଖୁବ୍ ଭଲ । ଆଚ୍ଛା ବାବୁ···ତୁମେତ ଏ ଗତି ପାହିଲେ ଘୁଲିଯିବ । ଗୋଟାଏ କଥା କହନ୍ତୁ ?

—ଘୁଲିଯିବି ମାନେ— ଏଇ ଆମ ଅଫିସକୁ ? ଘର ବହୁତ ଦୂରରେ । ଗତ ରଜ ପର୍ବରେ ଯାଇଥିଲି ।

—ତୁମ ଠିକଣାଟା ଲେଖିଦିଅ ।

—ମୋ ଅଫିସତ ଆପଣ ଦେଖିଛନ୍ତି ।

—ଅଫିସ ନୁହେଁ, ତୁମ ଘର ଠିକଣା ।

—ଠିକ୍ ଅଛି, ଲେଖି ଦେବି ।

ଗୌନ୍ତିଆ କହିଲେ ଏଠୁ ଗଲାପରେ ଭୁଲିଯିବ ନାହିଁ ବାପ । ଦିନରେ ଥରେ ନହେଲେ ନାହିଁ ଦୁଇ ଦିନରେ ଥରେ ନିଶ୍ଚୟ ଆସିବ ! ମୁଁ ଗରିବ ଲୋକ, ଯଦି ଚର୍ଚ୍ଚାରେ କିଛି ତ୍ରୁଟି କରିଥାଏ କ୍ଷମା କରିଦେବ ।

ପ୍ରିୟରଞ୍ଜନ କହିଲେ; ଏପରି କୁହନ୍ତୁ ନାହିଁ । ଆପଣ ଜଣେ ଦେବତା ବୋଲି ଲୋକଙ୍କ ମୁହଁରୁ ଶୁଣିଛି । କାର୍ଯ୍ୟରେ

ଯାହା ଦେଖିଲି ଲୋକଙ୍କ କଥା ମିଛ ନୁହେଁ । ଆପଣ ପ୍ରକୃତରେ ଜଣେ ଦେବତା ! ତ୍ରୁଟି ନୁହେଁ । ଆପଣଙ୍କ ସେବା ଚର୍ଚ୍ଚା ଏବଂ ବ୍ୟବହାର ପାଇଁ ମୁଁ ଧନ୍ୟବାଦ ଦେଉଛି । ଆପଣଙ୍କ ବ୍ୟକ୍ତିତ୍ୱକୁ ବାରମ୍ବାର ନମସ୍କାର କରୁଛି ।

ଆଜି ନୁହେଁ, ସାରା ଜୀବନ ଆପଣଙ୍କୁ ମନେ ରଖିବି ।

କୁସୁମୀ ମୋର ଚିର ସ୍ମରଣୀୟା ହୋଇ ରହିବେ ।

ଗୌନ୍ତଆ ପ୍ରିୟରଞ୍ଜନଙ୍କୁ ବିଶ୍ରାମ କରିବାକୁ କହି ଚାଲି-ଗଲେ । ଗାଁ ମଝି ଛକରେ ନାଚ ତାମଶା ଚାଲିଛି । ରାତି ପାହି ଆସିଛି । ଫେରି ଆସିଛନ୍ତି ଫୁଲରାଣୀ ଓ କୁସୁମୀ । କେଜାଣି କାହିଁକି ପ୍ରିୟରଞ୍ଜନକୁ ଦେଖିଲାବେଳ ଠାରୁ ସେ ତାଙ୍କୁ ଏକପ୍ରକାର ଆପଣାର କରି ପକାଇଛି । ମନେ ହେଉଛି ପ୍ରିୟ ରଞ୍ଜନ ତା'ର ଗୋଟାପଣେ ଆପଣାର ।

ଜଣା ନଥିଲା ହଠାତ୍ ଏପରି ଗୋଟାଏ ପର୍ବ ଦିନରେ ଜଣେ ମନ ମାନିଲାଭଳି ମଣିଷ ଜୁଟିଯିବ ।

ସାଥୀ ପିଲାଙ୍କ ସହିତ ଗୀତଗାଇ ପାରିଲା ନାହିଁ କୁସୁମୀ । ପ୍ରିୟରଞ୍ଜନଙ୍କ ବ୍ୟଥା ଜର୍ଜରିତ ମୁଖମଣ୍ଡଳଟି ବାରମ୍ବାର ତା ଆଖି ଆଗରେ ଦେଖାଗଲା ।

ଫୁଲରାଣୀ ଜାଣି ପାରିଲା ।

କହିଲା, କ'ଣ ହେଲାକି ଅପା ! ଗୀତ ଗାଉନୁ କାହିଁକି କିଲେ ? ଦେଖୁନୁ ହେନା, ମାଳତିକା, ଝରଣା, ତାରା ଆଉ ରାଜରାଣୀ

କେମିତି ନାଚୁଛନ୍ତି । ପୁଚି ଖେଳୁଛନ୍ତି । ଆଗପଛ ହେଉଛୁ କ'ଣ । ଗାଇଲୁ ସେ ଗୀତଟି । ଗୀତଗାଇ ପାରିଲାନାହିଁ କୁସୁମୀ ।

ବାରମ୍ବାର ସ୍ୱର ଭୁଲ ହେଲା । ପଦ୍ୟ ମନେ ପଡ଼ିଲାନାହିଁ । ସାଙ୍ଗମାନେ ଜାଣିଲେ । ନିଶ୍ଚେ କୁସୁମୀର ଗୋଡ ଖସିଯାଇଛି । ଯାହାକୁ ମରଣ ମୁହଁରୁ ଛଡ଼ାଇ ରଖିଛି ତା ପାଖରେ ମନଟାକୁ ହଜାଇ ଦେଇଛି । କେହି ଭୟରେ ମନର କଥାଟା ପ୍ରକାଶ କଲେ ନାହିଁ । ଗାଁ ଗୌନ୍ତିଆଙ୍କର ଅଲିଅଳି ଝିଅତ । ଯଦି ତା ବାପ ନିକଟରେ କହିଦିଏ....ତେବେ କଥା ବଳେଇ ଯିବ । ବଡ ଲୋକର ଝିଅ...ମୁହଁରେ କହିବ କିଏ ! ଫୁଲରାଣୀ କହିଲା, କିଲୋ ଅପା ! ଆଗେତ ଏତେ ଗୀତ ଗାଉଥିଲୁ.. ଚୁପ୍ ରହିଲୁ କାହିଁକି ମ । ଆଜି ତୋର କ'ଣ ହେଲାଯେ ମନେ ପଡୁନି । ସତ କହିଲୁ କ'ଣ ସେ ବାବୁଙ୍କ କଥା ଭାବୁଛୁ ?

—ହଁ ।

—ଅପା !

—ତୋତେ ମିଛ କହିପାରିବି ନାହିଁ ଫୁଲରାଣୀ । ତୁ ମୋର ଜୀବନ । ସତ କହୁଛି, ତାଙ୍କୁ ଦେଖିଲା ବେଳଠାରୁ ମୋର ଯେପରି କିଛିଟା ପରିବର୍ତ୍ତନ ହୋଇଛି ।

—ତାହାହେଲେ ତ ମୁସ୍କିଲ !

—ସେପରି କହନା । ମୁଁ ଏତେ ଦୁର୍ବଳ ନୁହେଁଯେ ତାଙ୍କୁ ଲୋଡେଇ ଯାଇଛି । ତାଙ୍କୁ ବିବାହ କରିବାକୁ ଜିଦ୍‌ଧରି ବସିବି । ବାପ-ମା'ଙ୍କ ମୁହଁ ତଳକୁ କରିଦେବି ।

—ତେବେ ?

—ତାଙ୍କ ପ୍ରତି ମୋର ଗୋଟାଏ···ମାନେ···ମାନେ···

ଜୋରରେ ହସି ଫୁଲରାଣୀ କହିଲା, ଯାହାର କିଛି ମାନେ ନାହିଁ ସେହି ଶବ୍ଦଟିର ନାମ କ'ଣ କହିଲୁ ଅପା ?

ସିହାଣୀ ଫୁଲରାଣୀର ଇଙ୍ଗିତ ବୁଝିପାରି ଚୁପ୍ ହୋଇଗଲା କୁସୁମୀ। ଫୁଲରାଣୀ ଠିକ୍ ତା ମନର କଥାଟି ବୁଝି ପାରିଛି। ଧରି ପାରିଛି ଦୁର୍ବଳତା। ଫୁଲରାଣୀ ଏଥର କହିଲା, ଆଉ ଠିଆ ହେଲୁ କାହିଁକି ଅପା ?

—ମୁଁ ଗୀତ ଗାଇବି ନାହିଁ।

—ଖେଳିବୁନି ?

—ନା।

—ନାଚିବୁତ ?

—ଇଚ୍ଛା ହେଉନାହିଁ।

—ବେଙ୍ଗ ବାହାଘର ହେବ। ତୁ ବ୍ରାହ୍ମଣ ହେବୁତ ?

—ନା। ମନ ଭଲ ନାହିଁ।

—ତାହା ହେଲେ।

—ଯିବା।

—ଘରକୁତ।

—ହଁ। ରାତି ପାହି ଆସିଲାଣି।

—ପ୍ରିୟରଞ୍ଜନ ବାବୁ ନିଶ୍ଚୟ···

—ଔଷଧ ଖାଇବା ପାଇଁ ମତେ ···

—ଖୋଜି ଖୋଜି ହାଲିଆ ହେବେଣି ।

—ଯାଃ !

—ମଲି ମଲି···ମତେ ମାରୁଛୁ କାହିଁକି । ତୋ ତୁଣ୍ଡର କଥା ମୋ ତୁଣ୍ଡରେ ହଉ ! ଚାଲ !

ଦୁଇ ଭଉଣୀ ଘରେ ପହଞ୍ଚିଲେ । ଗାଧୋଇ ଆସିଲେ । ସକାଳ ହେଲା । ପ୍ରିୟରଞ୍ଜନ ଦାନ୍ତ ଘସୁଥିଲେ । ଫୁଲରାଣୀ ପାଣି ଦେଲା । ଚା ବସାଇଲା କୁସୁମୀ ।

ଫୁଲରାଣୀ ଜଳଖିଆ ପ୍ରସ୍ତୁତ କଲା ।

ଗାଧୋଇବାକୁ ପାଣି ଯୋଗାଇ ଦେଲା କୁସୁମୀ । ଫୁଲ-ରାଣୀ ଆଲମିରା ଖୋଲି ଧୋତି ଚାଦର କାଢ଼ିଦେଲା ।

ପ୍ରିୟରଞ୍ଜନ ସ୍ନାନାଦି କାର୍ଯ୍ୟ ଶେଷ କଲେ । ଚା' ଜଳଖିଆ ବାଢ଼ିଦେଲା ଫୁଲରାଣୀ । କୁସୁମୀ କହିଲା ଖାଇ ନିଅନ୍ତୁ ।

—ହଁ ଶୀଘ୍ର ଯିବାକୁ ହେବ ।

—ପାରିବେତ !

—ହଁ ଦେହ ଭଲଲାଗୁଛି । ମୁଁ ସୁସ୍ଥ ହୋଇଛି ।

—ଅଫିସକୁ ଯିବେତ !

—ହଁ ।

—ଆଉ କେବେ ···

—ଆସିବାକୁ ଚେଷ୍ଟା କରିବି ।

ନିଶ୍ଚୟ !

—ହଁ ।

—ମୋର ଯଦି କିଛି ଦୋଷ ଦେଖିଥାନ୍ତି କ୍ଷମା କରି-ଦେବେ । ହସିଲେ ପ୍ରିୟରଞ୍ଜନ ।

କହିଲେ, ତୁମର ଦୋଷ ବାଛିବାକୁ ମୋର କ୍ଷମତା ନାହିଁ କୁସୁମୀ ! ତୁମର ଗୁଣ ବର୍ଣ୍ଣନା କରିବାପାଇଁ ମୁଁ ଅଯୋଗ୍ୟ ।

କୁସୁମୀର ଅଙ୍ଗ ଅଙ୍ଗନରେ ବିଦ୍ୟୁତ୍ ଚମକ । ଏହା ପ୍ରିୟରଞ୍ଜନଙ୍କର ପ୍ରଶଂସା ବା ପ୍ରସସ୍ତି ନୁହେଁ । ଏହା ତାଙ୍କ ଅନ୍ତର ପ୍ରଦେଶର ଭଷା ।

ପ୍ରିୟରଞ୍ଜନ ଦୃଷ୍ଟି ଫେରାଇ ପାରି ନଥିଲେ ।

ଚ'ଥଣ୍ଡା ହୋଇ ଗଲାଣି ।

ଜଳଖିଆ ଖାଇବାକୁ ପାଶୋରି ଯାଇଛନ୍ତି ସେ । ଆଖି ରହିଛି କୁସୁମୀ ଉପରେ ।

କେହି କାହାକୁ କିଛି କହିପାରୁ ନାହାନ୍ତି ।

କୁସୁମୀ ଆଖିରୁ ଲୁହ ଝରିଗଲା ।

ପ୍ରିୟରଞ୍ଜନ ସ୍ୱୀକାର କଲେ । ସେ ବୋଧେ କୁସୁମୀକୁ ଜଣାଇ ଦେଲେ । ମୁଁ ତୁମକୁ ଭଲପାଇ ବସିଛି କୁସୁମୀ । ତୁମକୁ ପାଇବାର ସ୍ୱପ୍ନ ଦେଖି ସାରିଛି । ବେଶି ଦୂରତ ନୁହେଁ, ଏହି ପାଖା ପାଖି ରହୁଛି । ନିଶ୍ଚୟ ତୁମେ ମତେ ଏବଂ ତୁମକୁ ପାଇବା ପାଇଁ ଯତ୍ନବାନ ହେବା । ବିଦାୟ ।

ନମସ୍କାର ।

ନମସ୍କାର ।

ଚାଲି ଯାଉଥିଲେ ପ୍ରିୟ୍.ରଞ୍ଜନ ।

କୁସୁମୀ ପଛରୁ ଡ଼ାକି କହିଲା, ବାପାଙ୍କୁ ନ ଜଣାଇ ଏମିତି ଚାଲି ଯିବାଟା ଭଦ୍ରାମି ନୁହେଁ ପ୍ରିୟରଞ୍ଜନ ବାବୁ ।

ଠକ୍ ଠକ୍ ଅଟକିଗଲେ ପ୍ରିୟରଞ୍ଜନ ।

ଇସ୍ ! କି ଅପମାନ ।

ଆଶ୍ରୟଦାତା ଜୀବନ ରକ୍ଷାକାରୀ ପରୋପକାରୀଙ୍କୁ ନ କହି ଚାଲି ଯିବାଟା ମୋଟେ ଭଦ୍ରତା ନୁହେଁ ।

କୁସୁମୀ ଭରି ଚାଲାକ୍ । ଯଥେଷ୍ଟ ବୁଦ୍ଧି ତାର ଅଛି । ଫେରିପଡ଼ ପ୍ରିୟରଞ୍ଜନ କହିଲେ, କ୍ଷମା କରିଦେବ କୁସୁମ । ଭୁଲ ହୋଇଗଲା, । ବାପା କାହାନ୍ତି । ମୁଁ ତାଙ୍କୁ ନ କହି ଯିବା:ଟା ଠିକ ନୁହେଁ ।

କୁସୁମୀର ସରସ ମୁହଁଟିରେ ଆଶ୍ଚର୍ଯ୍ୟର ଘନଘଟା । ଯିଏ ଏ' ମଣିଷଟିକୁ ନବ ଜୀବନ ଦେଲା, ସେ ଦେବତାଟିକୁ ଧନ୍ୟବାଦ ନ ଦେଇ ପ୍ରଣାମଟିଏ ନ କରି·····

ଦୀର୍ଘଶ୍ୱାସ ନେଲା କୁସୁମୀ । କୁସୁମୀର ଭାବନା ଜାଣି ଲଜ୍ଜିତହେଲେ ପ୍ରିୟରଞ୍ଜନ । ହାରିଗଲେ ସେ ଶୋଚନୀୟ ଭାବରେ ।

× × ×

ବଗିଚ୍ଚରେ ଖେଳେନା କୁସୁମୀ ।

ଗାଏନା ମଧୁର ସଂଗୀତ ।

କୁହେନା ଅଧିକ କଥା କିବା ଖାଏନା ଭେକ ହେଲେ ରାତିରେ ନିଦ ଆସେନା । କିଛି ଭଲ ଲାଗେନା । ଚିନ୍ତାରେ ଦିନ ଯାଏ । ରାତି ପାହେ ଭାବନାରେ । କ'ଣ କରିବି କହି ଅନୁଚ୍ଚ ସ୍ୱରରେ କାନ୍ଦେ । ବାପା ଯୌତୁକ ଦେବାକୁ ଅକ୍ଷମ । ଅଧିକ ଦାବୀ ଆସିଲେ ସେ ଦେଇ ପାରିବେ ନାହିଁ ।

ଏହା ମଧ୍ୟରେ ଗୋଟାଏ ମାସ ବିତି ଯାଇଛି । ପ୍ରିୟରଞ୍ଜନ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ଆସନ୍ତି । ଠାକୁର ଗୌନ୍ତିଆଙ୍କ ସହିତ ଗଳ୍ପ କରନ୍ତି । ଫୁଲରାଣୀ ସହିତ ଯୁକ୍ତିତର୍କ କରନ୍ତି····କଣେଇ ଚାହାନ୍ତି କୁସୁମୀକୁ ।

କୁସୁମୀ ବିଶ୍ୱାସ କରେନା ।

ମନରେ ଖଟ୍‌କା ପଶେ ।

ଛାତି ଦୁଲୁକି ଯାଏ ।

ଧନ ହଜିଲେ ମିଳେ ।

ମାଛ ଖସିଗଲେ ଅନ୍ୟ ମାଛ ମିଳେ ।

ବର୍ଷେ ଫସଲ ଗଲେ ଆସନ୍ତା ବର୍ଷରେ ମିଳିଯାଏ ।

କିନ୍ତୁ ମନ ହଜିଗଲେ ବା ଖସିଗଲେ ମିଳି ପାରେନା । ଖୋଜି ଖୋଜି ସାରା ଜୀବନଟା ବିତାଇ ଦେଲେବି ହାତକୁ ଆସେନା । କୁସୁମୀ ଫୁଲରାଣୀକୁ କହେ, ପ୍ରୀୟରଂଜନଙ୍କ

ମନରେ କଣ ଅଛି ଜାଣି ହୁଏନାହିଁ । ତାଙ୍କୁ ଧରାଇଦେଲେ ମହତ ହଜିଯିବ । ସତୀତ୍ୱ ଲୁଚିଯିବ । ଜୀବନ ହେବ କଳଙ୍କିତ

—ଛି ।

ବାପ-ଭାଇ ମତେ କ'ଣ ନ କହିବେ ; ନା ଅବିବାହିତା ରହିବି ପଛକେ କାହାରିକୁ ଧରାଦେଇ ଜୀବନ କଳଙ୍କିତ କରିବି ନାହିଁ । ଫୁଲରାଣୀ କହେ, ଅପା ତୁ ଯଦି ପ୍ରିୟରଞ୍ଜନଙ୍କୁ ବିବାହ କରୁ ଭଲ ହୁଅନ୍ତା । କେଜାଣି ଯୌତୁକ କେତେ ପଡୁଛି ବାପା ମୁଣ୍ଡରେ ହାତଦେଇ ବସୁଛନ୍ତି । ଭାଇ ସବୁବେଳେ ତୋ କଥା କହି ବ୍ୟସ୍ତ ହେଉଛନ୍ତି । ଏମିତି ଭଉଣୀ ତୋର ଯେ ବରଟିଏ ମିଳୁ ନାହିଁ । ହସିଲା କୁସୁମୀ । ଫୁଲରାଣୀ କହିଲା,

ହସିଲୁ ଯେ, ।

—ତୋ କଥାରେ ।

—ମୋ କଥା ତୋର ପସନ୍ଦ ହୁଏ ନାହିଁ ଯାଣିଛି ।

—ହୁଏ ନାହିଁ ନୁହେଁ, ହୁଏ ।

—ତୁ ତା'ହେଲେ ପ୍ରିୟରଞ୍ଜନଙ୍କୁ ବିବାହ କରିବୁ ।

—ବାପା ଯାହା କରିବେ—କହିବେ ମାନିବି ।

—ବାପା ଯଦି ପ୍ରିୟରଞ୍ଜନଙ୍କୁ ପସନ୍ଦ ନ କରନ୍ତି କି ପ୍ରିୟ ରଂଜନଙ୍କ ବାପା ଅଧିକ ଯୌତୁକ ଦାବୀ କରନ୍ତି ତେବେ ?

—ବାହାଘର ହେବନାହିଁ ।

—ତୋ ମନରେ....

—କୌଣସି ପରିବର୍ତ୍ତନ ହେବ ନାହିଁ ।

—ତୁ' ତାହେଲେ ପ୍ରିୟରଂଜନଙ୍କୁ ଭଲ ପାଉନା ।

—ପାଏତ ।

—ତୋ କଥା ମୁଁ ବୁଝି ପାରୁନି ।

—ମୋ କଥା ବୁଝିବା ଦରକାର ନାହିଁ, ତୋ କଥା ତୁ ବୁଝ ।

—ମୋ ପାଇଁ ତୁ ଅଦ୍ଭୁତ ।

—ହଁ ।

—ଏହିତ ପ୍ରିୟରଂଜନ ବାବୁ ଆସିଲେଣି ।

—ତୁ ଏଠାରୁ କିଛି ସମୟ ପାଇଁ ଚାଲିଯା । ମୁଁ ତାଙ୍କର ମନର କଥା ବୁଝେ ।

ଫୁଲରାଣୀ ଚାଲିଗଲା । ପହଞ୍ଚିଲେ ପ୍ରିୟରଂଜନ ବାବୁ । କୁସୁମୀ ନମସ୍କାର କରି ବସିବାକୁ ଆସନ ଦେଲା ପରେ କହିଲା, ମୋର ତୁମକୁ କେତୋଟି ପ୍ରଶ୍ନ ଅଛି ପ୍ରିୟରଂଜନ ବାବୁ । ଆଶାକରେ ପ୍ରତିଟି ପ୍ରଶ୍ନର ଉତ୍ତର ଦେବେ । ପ୍ରିୟରଂଜନ ହଠାତ୍ କୁସୁମୀ ଠାରୁ ଏପରି କଥା ଶୁଣି କହିଲେ, ପ୍ରଥମ ପ୍ରଶ୍ନଟି କଣ ।

—କୁସୁମୀ ସଙ୍ଗେ ସଙ୍ଗେ କହିଲା, ମୋ ବାପା ଆପଣଙ୍କ ସହିତ ମୋର ବିବାହ ଦେବାକୁ ଚାହାନ୍ତି । ଏଥିରେ ଆପଣଙ୍କର ମତ କ'ଣ ?

ପ୍ରିୟରଂଜନ କହିଲେ, ମୋର ଠିକ୍ ଏହି ପ୍ରଶ୍ନ ତୁମକୁ । କୁହ ତୁମେ ମତେ ବିବାହ କରିବାକୁ ଚାହଁକି ?

—କାରଣ ?

—ମୋ ବାପା ଯାହା କହନ୍ତୁ ମୁଁ ମାନିନିଏ ।

ପ୍ରିୟରଂଜନ କହିଲେ, ଶୁଣ କୁସୁମ, ତୁମେ ମୋର ଜୀବନ ରକ୍ଷା କରିଛ । ସେବା କରିଛ । ମୁଁ ଅକୃତଜ୍ଞ ହେବିନହିଁ

ତୁମକୁ ବିବାହ କଲେ ଧନ୍ୟ ହେବି ମୁଁ ।

ଏହାତ ମୋ ମନର କଥା ।

କୁସୁମୀ କହିଲା, ମୋ ବାପା ଯୌତୁକ ଦେବାକୁ ପସନ୍ଦ କରନ୍ତୁ ନାହିଁ । ଯାହା ତାହାର ଶକ୍ତି ସେତିକି ଦେବେ । ଏଥିରେ ତୁମ ବାପା ରାଜି ହେବେତ ?

—ଯୌତୁକ ପ୍ରଥା ଏକ ସାମାଜିକ ବ୍ୟାଧି । ଯୌତୁକ ଦ୍ୱାରା ନାରୀ ଜାତି ବା ମାଆର ଜାତିକୁ ଅପମାନିତ କରା-ଯାଉଛି । ମୁଁ ଏହାର ପ୍ରତିବାଦ କରୁଛି । ଅବଶ୍ୟ ବାବାଙ୍କର ରୁଚି ସ୍ୱତନ୍ତ୍ର ।

ବିବାହ ସମ୍ପର୍କରେ ତ ?

—ହଁ ।

—କନ୍ୟା ପସନ୍ଦ ହୋଇଛି ।

—ହଁ, ମୁଁ ତୁମକୁ ପସନ୍ଦ କରିଛି ।

—ବାପା-ଭାଇ ତୁମର···

—ମୋ ରୁଚିରେ ବାଧା ଦେବେ ନାହିଁ ।

—ମୁଁ ତାହେଲେ···

—ବାପାଙ୍କୁ ଖବର ଦିଅ ।

—ଯାଉଛି ।

—ହଁ ଶୁଣ ।

—କ'ଣ ? ଠିଆ ହେଲା କୁସୁମୀ । ଦେଖିଲା ପ୍ରିୟରଞ୍ଜନ ତାଙ୍କୁ ସନ୍ଦେହ ସୂଚକ ଭାବରେ ଚାହିଁ ରହିଛନ୍ତି । କିଛି ଗୋଟାଏ ସନ୍ଦେହ ତାଙ୍କୁ ବିବର୍ଣ୍ଣ କରି ପକାଇଛି ଯେପରି । କିଛି କହି-ପାରୁ ନାହାଁନ୍ତି ।

—କୁହ, ଠିଆହେଲ ଯେ !

—ନା ! କିଛି ନାହିଁ, ଯାଅ ବାପାଙ୍କୁ ଡାକିଦିଅ ।

—ପ୍ରିୟରଞ୍ଜନ ବାବୁ ।

—କ'ଣ ।

—ଲୁଚଉଛ କାହିଁକି । ତୁମ ମନରେ ଯାହା ଲୁଚି ରହିଛି ମୁଁ ଜାଣିଛି ।

—କ'ଣ ?

—ଆପଣ ନିଶ୍ଚୟ····

—ଶୁଣିଲି ତୁମେ ଗୌନ୍ତିଆଙ୍କର ପାଳିତା କନ୍ୟା ।

—ହଁ ।

—ଜନ୍ମ ପରିଚୟ····

—ମୋର ନାହିଁ ।

—କେଉଁ ଜାତିର ଝିଅ ତୁମେ·····

—ମୃଗୁଣୀ, ହସ୍ତିନୀ, ଚିତ୍ରିଣୀ କିମ୍ବା ପଦ୍ମିନୀ ହୋଇଥିବି ।

—ଥଟ୍ଟା କରୁଛ କୁସୁମ ।

—ଥଟ୍ଟା ! ନା ନା ଥଟ୍ଟା ନୁହେଁ, ସତକଥା କହୁଛି । ତୁମେ ମୋର ବର ହେବାକୁ ଯାଉଛ । ତୁମକୁ ଥଟ୍ଟା କରିବିତ ପୂଜା କରିବି କାହାକୁ । ଶୁଣିଲେତ ମୋର ଜନ୍ମ ପରିଚୟ ନାହିଁ ।

କେଉଁ ଜାତିର ପ୍ରଶ୍ନ କାହିଁକି । ମଣିଷଜାତି ନିଶ୍ଚୟ । ଗୌନ୍ତଆ ପହଞ୍ଚି କହିଲେ, ଦୁହିଁଙ୍କ ମଧ୍ୟରେ କେଉଁ କଥାନେଇ ଯୁକ୍ତି-ତର୍କ ଚାଲିଛି । ଜଣାଯାଉଛି କୁସୁମୀ ରାଗି ଯାଇଛି ।

—ବାପା ! ପ୍ରିୟରଞ୍ଜନ ବାବୁ କହୁଛନ୍ତି ମୁଁ କେଉଁ ଜାତିର ଝିଅ । ଗମ୍ଭୀର ହେଲେ ଠାକୁର ଗୌନ୍ତଆ । କୁସୁମୀ ସମ୍ପର୍କରେ ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଶୁଣାଇ ଦେଲେ ପ୍ରିୟ-ରଞ୍ଜନଙ୍କୁ । ଶେଷରେ କହିଲେ; ଦିନେନା ଦିନେ କୁସୁମୀର ବାପ ମା' ସୂର୍ଯ୍ୟାଲୋକରେ ଆପଣାର ପରିଚୟ ଦେବେ ।

—କୁସୁମୀ ମୋ ଝିଅ ବୋଲି ସଂସାର ଜାଣିଛି ।

ମୋର ଦୃଢ଼ବିଶ୍ୱାସ ସେ କୌଣସି ରାଜବଂଶୀୟା । ଦେଖୁଛତ ପ୍ରିୟରଞ୍ଜନ ମା' ମୋର ରୂପରେ ପାର୍ବତୀ, ଗୁଣରେ ସରସ୍ୱତୀ । ସେ ମୋ ଘରକୁ ଆସିଲା ଦିନୁ ମୋର ଯଥେଷ୍ଟ ଉନ୍ନତି ହୋଇଛି । ତୁମେ ତା ସମ୍ପର୍କରେ ଅଧିକ ଆଉ କ'ଣ ଶୁଣିବ ? ନିଜେ ଦେଖିଛ ମା' ମୋର ତୁମ ପାଇଁ କେତେ ଖଟିଛି । କୁହ ପ୍ରିୟରଞ୍ଜନ, କୁସୁମୀକୁ ବିବାହ କରିବତ ?

ପ୍ରିୟରଞ୍ଜନ ନୀରବରେ ବସିଥିଲେ ।

କୁସୁମୀ ମୁହଁରେ ଚିନ୍ତାର ଘନଘଟା । ଗୌନ୍ତଆ କହିଲେ ଅନେକ ପ୍ରସ୍ତାବ ଆସିଛି । କେଉଁଠାରେ ମୋ ମନ ମାନିନି । ତୁମକୁ ଦେଖିଲା ପରେ ମନରେ ଗୋଟାଏ ଆଶା ଖେଳି-ଯାଇଛି । ଭାବୁଛି ଝିଅଟିକୁ ତୁମରି ହାତରେ ଛାଡ଼ଦେଇ ନିଶ୍ଚିନ୍ତ ହେବି । ଜାଣିଛି ସେ ତୁମକୁ ଭଲପାଏ । ତୁମେ ମଧ୍ୟ ତାକୁ ଭଲ ପାଇଛ । ତୁମ ସମ୍ମତି ପାଇଲେ ବାପାଙ୍କ ନିକଟକୁ ଯାଇ

ସମ୍ଭବ ପଡ଼୍‌କା କରି ଆସିବି ।

ପ୍ରିୟରଞ୍ଜନ ନିର୍ମମ ହେଲେ ।

ତାଙ୍କ ସମ୍ମୁଖରେ ଲୋକ ଅନ୍ଧକାର ଠିଆ ହେଲେ । ସେ କହିଲେ, ଆପଣଙ୍କ ଝିଅ ସୁନ୍ଦରୀ, ଶିକ୍ଷିତା କିନ୍ତୁ କଳଙ୍କଯୁକ୍ତା । ତାର ଜନ୍ମ ଇତିହାସ ନାହିଁ । କାହା'ର ଝିଅ ସେ ଜାଣେନା । ମୁଁ ତାପରି ଗୋଟାଏ ଅଜ୍ଞାତ କୁଳଶୀଳା ଝିଅକୁ ବିବାହ କରିବାକୁ କୁଣ୍ଠାବୋଧ କରୁଛି ।

—ପ୍ରିୟରଞ୍ଜନ !

କ୍ଷମା କରିବେ ଆଜ୍ଞା । ଏପରି ଏକ ଝିଅକୁ ମୁଁ ଏକା ନୁହେଁ କେହି ବିବାହ କରିବେ ନାହିଁ ।

ପ୍ରିୟରଞ୍ଜନଙ୍କର ନିଷ୍ଠୁର ବାକ୍ୟରେ ମର୍ମାହତ ହେଲେ ଗୌନ୍ତିଆ ଓ କୁସୁମୀ । ଦୁଇମାସ ଧରି ପ୍ରିୟରଞ୍ଜନ ଏ ଘର ସହିତ ସଂପୃକ୍ତ । ଅଧିକେ ସମୟ ସେ ଏଇଠି କାଟନ୍ତି । କୁସୁମୀ ସହିତ ସମ୍ପର୍କ ବେଶ ନିବିଡ଼ ହୋଇ ଯାଇଥିଲା । ପ୍ରିୟରଂଜନ କୁସୁମୀକୁ କାମାଗ୍ନିରେ ଜାଳି ଦେବାପାଇଁ ବହୁ-ଥର ଚେଷ୍ଟା କରି ବ୍ୟର୍ଥ ହୋଇଛନ୍ତି । କୁସୁମୀ ଯଦିଓ ପ୍ରିୟ-ରଂଜନଙ୍କ ଆଡ଼କୁ ଢଳି ପଡୁଥିଲା, ପରକ୍ଷଣରେ ନିଜକୁ ସଂଯତ କରି ପକାଉଥିଲା । ଦୁର୍ବଳତାକୁ ନିଷ୍ଠା ଦ୍ୱାରା ଲୋପ କରି ଦେଉଥିଲା । ଯୌବନର କ୍ଷୁଧା ନିବାରଣ କରିବାକୁ ସେ ନିଜକୁ କଳୁଷିତ କରିବାକୁ ପସନ୍ଦ କରୁ ନଥିଲା ।

ପ୍ରିୟରଂଜନ ଆଗେଇ ପାରି ନଥିଲେ ।

ମନରେ ପାପ ଲୁଚି ରହିଥିଲେ ମଧ୍ୟ କୃତକାର୍ଯ୍ୟ ହୋଇ-ପାରି ନ ଥିଲେ । କୁସୁମୀର ଏକାଗ୍ରତା ଓ ସତ୍ ମନୋଭାବ

ନିକଟରେ ସେ ବାରମ୍ବାର ପରଡିତ ହୋଉଥିଲେ । କୁସୁମୀକୁ ବିବାହ କରିବାକୁ ପ୍ରବଳ ଇଚ୍ଛା ତାଙ୍କର ଅଛି । କିନ୍ତୁ ଆଜି ଶୁଣିଲେ କୁସୁମୀର ବାପା ଗୌନ୍ତଆ ନୁହନ୍ତି, ଅନ୍ୟ କେହି ତାଙ୍କ ମନରୁ ସମସ୍ତ ବନ୍ଧନ କଟିଗଲା । ମମତା ମରିଗଲା ।

ଛି !

କୁସୁମୀ ଜାରଜ !

ବାପର ନାଁ । ଜାଣେନା ।

ଜନ୍ମର ଠିକଣା ନାହିଁ ।

କେଉଁ କୁଳରେ ଜନ୍ମ ଠିକ୍ ନାହିଁ । ରୂପ ସୁନ୍ଦର ହେଲେ କଣ ହେଲା, ସେ ଯେ କଳଙ୍କିନୀ । ଅଜ୍ଞାତ କୁଳଶୀଳା–ଜାରଜ

ଆଶା ବୃକ୍ଷଟି ହତାସ ବତାଶରେ ଟଳି ପଡ଼ିଲା । ସିଧା ଚାଲି ଆସିଲେ ଗୌନ୍ତଆଙ୍କ ସହିତ ଆଲୋଚନା କରିବାକୁ । ହଠାତ୍ କୁସୁମୀକୁ ଜଣାଇଦେଲେ ସେ ଆଘାତ ପାଇବ ! ସେଥିପାଇଁ ତାକୁ ଆଶାର ବାଣୀ ଶୁଣାଇବାକୁ ପଡ଼ିଲା । ଏହିତ ଠାକୁର ଗୌନ୍ତଆ ଲୁହ ଗଡ଼ାଇ କାନ୍ଦୁଛନ୍ତି ।

କୁସୁମୀ ଚୁପ୍‌ଚାପ୍ ଠିଆ ହୋଇଛି । ଭାବୁଛି କିଛି ବୋଧେ ତା ଆଖିରେ ଲୁହ ନାହିଁ । ହତାଶ ଭାବ ଦେଖିବାକୁ ମିଳୁ-ନାହିଁ । ଜଣା ଯାଉଛି ସେ ଯେପରି ପ୍ରିୟରଞ୍ଜନଙ୍କୁ ଚିହ୍ନେନାହିଁ ।

ଗୌନ୍ତଆ ରଞ୍ଜନଙ୍କ ହାତଧରି ଅନୁରୋଧ କରି କହିଲେ, କୁସୁମୀକୁ ନିରାଶ କରନା ପ୍ରିୟରଞ୍ଜନ । ତାକୁ ଗ୍ରହଣ କର । ଝିଅ ମୋର ସବୁ ଗୁଣରେ ଭଲ ।

ରଞ୍ଜନ ଦେଖିଲେ ଗୌନ୍ତିଆ କୁସୁମୀ ପାଇଁ ଖୁବ୍ ବ୍ୟାକୁଳ । ସୁଯୋଗ ନେଇ କହିଲେ, ମୁଁ ·ଆପଣଙ୍କ ଅନୁରୋଧ ରକ୍ଷା କରିବି ମହାଶୟ । ନିଶ୍ଚୟ କୁସୁମୀକୁ ବିବାହ କରିବି ।

—ପ୍ରିୟରଞ୍ଜନ !

—ହଁ, ତେବେ ଗୋଟାଏ ସର୍ତ୍ତରେ ।

—ସର୍ତ୍ତ ?

—ହଁ ।

—କୁହ ।

—ନଗଦ ପଚ୍ଚଶ ହଜାର ସାଙ୍ଗକୁ ଗୋଟିଏ ମଟର ସାଇ-କେଲ୍ ଦେବାକୁ ପଡ଼ିବ ।

—ଗୌନ୍ତିଆ ବୋକା ପାଲଟି ଗଲେ ।

—ପଚ୍ଚଶ ହଜାର !

—ମୋଟର ସାଇକେଲ୍ !

—ଗୋଟିଏ ଝିଅର ବିବାହ ପାଇଁ !

ଏ ଯୁଗଟାରେ ମାତୃ ଜାତିକୁ ପୁରୁଷ ଏହି ଦୃଷ୍ଟିରେ ଦେଖୁଛି ! ଆଶ୍ଚର୍ଯ୍ୟ ।

ପ୍ରିୟରଂଜନ ବାବୁ ! କ'ଣ କହିଲ ତୁମେ । କୁସୁମୀ ଭଳି ଗୁଣବତୀ ଝିଅକୁ ବିବାହ କରିବାକୁ ତୁମେ ଏତେଟଙ୍କା ଚାହୁଁଛ ?

ପ୍ରିୟରଂଜନ କହିଲେ, ଗୁଣବତୀ, ରୂପବତୀ ବା ଯୋଗ୍ୟା ହେଲେ କ'ଣ ହେବ, ଜାରଜ ସେ ।

—ଜାରଜ ?

—ନୁହେଁ !

—ପ୍ରିୟରଂଜନ !

—ଘଗୁଛନ୍ତ କାହିଁକି । ଯାହାର ପିତୃ ପରିଚୟ ନାହିଁ, ତାକୁ କେହି ଗ୍ରହଣ କରିବେ ନାହିଁ ; ମୁଁ କେବଳ ଧର୍ମକୁ ଘୁହିଁ ସନ୍ମତ ହେଉଛି । ଏତିକି ଯୌତୁକ ନ ହେଲେ ମୁଁ ଏକମତ ହୋଇ ପାରିବି ନାହିଁ ।

ଠାକୁର ଗୌନ୍ତଆ ପ୍ରିୟରଂଜନଙ୍କ ହାତ ଧରି ଅନୁରୋଧ କରି ଜଣାଇଲେ, କଥାରଖ ପ୍ରିୟରଂଜନ । ସରଗଟା ମୋର ଘଙ୍ଗନା । ପାଖରେ ଥିଲେ ନ ଦେବାକୁ କୁହନ୍ତ ନାହିଁ । କଳା ଟଙ୍କା ରୋଜଗାର କରିବାର ନିଶା ଥିଲେ. ହୁଏତ ମୁଁ ଲକ୍ଷେ ଟଙ୍କା ଦେବାକୁ କୁଣ୍ଠିତ ହୁଅନ୍ତ ନାହିଁ । ଘୃଷ ବ୍ୟତୀତ ଅନ୍ୟ ପନ୍ଥା କିଛି ମୋର ନାହିଁ । ହୁଇଟି ଝିଅର ବାପ ମୁଁ । ହାତ ଧରୁଛି, ମୋ କଥା ଟିକେ ବୁଝ ।

ଠାକୁର ଗୌନ୍ତଆ କାନ୍ଦ ଉଠିଲେ ।

କୁସୁମୀ ଲୁହ ପୋଛିଲ ।

ପ୍ରିୟରଂଜନ କହିଲେ, ମୁଁ ନାଗ୍ଧର ବାପା ମୋର ପାଠ ପଢା ପାଇଁ ବହୁ ଅର୍ଥ ବ୍ୟୟ କରିଛନ୍ତ ।

ମୋ ତଳେ ଭଉଣୀଟିଏ ବିବାହ କରିବାକୁ ଅଛି । ବାପା ଘହାନ୍ତ ମୋ ବିବାହ ପାଇଁ ଯେଉଁ ଅର୍ଥ ମିଳିବ, ସେହି ଅର୍ଥରେ ଭଉଣୀକୁ ଯୌତୁକ ଦେବେ । ଏକାଧିକ ପ୍ରସ୍ତାବ ଆସିଛି,

ବାପା ମନା କରି ଦେଇଛନ୍ତି । ପଚିଶ ହଜାର ଟଙ୍କା ସହ ମୋଟର ସାଇକେଲଟିଏ ଦେଲେ ମୁଁ କୁସୁମୀକୁ ବିବାହ କରିପାରେ ।

ଗୌନ୍ତିଆ କିପରିବା ଏହି ମୂର୍ଖ ମଣିଷଟିକୁ ବୁଝାଇବେ ଭାବି ପାରିଲେ ନାହିଁ ।

ସାନ ଭଉଣୀର ବିବାହ ପାଇଁ ନିଜକୁ ବିକ୍ରୀ କରିବାକୁ ଚାହୁଁଥିବା ଯୁବକଟିକୁ କି ପ୍ରକାର ନାମକରଣ କରାଯାଇପାରେ ।

ଗୌନ୍ତିଆ ଅନୁରୋଧ କଲେ ।

କୋଡ଼ିଏ ହଜାର ଦେବି ।

ମନାକରି ଦେଲେ ପ୍ରିୟରଂଜନ ।

କହିଲେ ବାପାଙ୍କର ଯାହା ଦାବି ମତେ ନିଶ୍ଚୟ ମିଳିବ । କାହିଁକି କହିଲେ କହିବି, ମୋ ବାପାଙ୍କର ଦଶ ଏକର ସମ୍ପତ୍ତି ଅଛି । ମୁଁ ସାନପୁଅ ବାପାଙ୍କର । ଉଚ୍ଚଶିକ୍ଷା ପାଇଛି । ଏତିକି ଜଣ ମୋର ଯୋଗ୍ୟତା ନୁହେଁ । ଅବଶ୍ୟ ମୋଟର ସାଇକେଲ ସହ କୋଡିଏ ହଜାରରେ ମୁଁ ଏକମତ ହୋଇ ଯାଇଥାନ୍ତି କିନ୍ତୁ କୁସୁମୀର କଳଙ୍କ ପାଇଁ ନୁହେଁ । ସେଥିପାଇଁ ତିରିଶି ହଜାର ଅଧିକ ଟଙ୍କା ଦେବାକ ହେବ ।

ଗୌନ୍ତିଆ ପୁଣିଥରେ ପ୍ରିୟରଂଜନଙ୍କ ହାତଧରି ନେହୁରା ହେଲେ । ସହିପାରିଲା ନାହିଁ କୁସୁମୀ । କ୍ରୋଧ ଜର୍ଜରିତ କଣ୍ଠରେ କହିଲା, ସେ ଛୋଟ ଲୋକଟାର ହାତ ଛାଡଦିଅ ବାପା । ଯାହାର ସାଧାରଣଜ୍ଞାନ ନାହିଁ ସେ ମୋର ସ୍ୱାମୀ ତ ଦୂରରକଥା–ଚାକର ହେବାପାଇଁ ଅଯୋଗ୍ୟ । ଚାକରକୁ ଡ଼ାକିକୁ ହ

ବେଇମାନ ମୂର୍ଖଟାକୁ ଗଳା ଧକ୍କା ଦେଇ ଘରୁ ବାହାର କରି ଦେଉ । ଯୌତୁକ ଯାହାର ଜୀବନ ତା ପାଇଁ ପ୍ରାପ୍ୟ ଅପମାନ ।

ପ୍ରିୟରଂଜନ ଥରି ଉଠିଲେ ।

ଏଁ; ଏ କଣ ! କୁସୁମ ମତେ ଏତେ ନୀଚ ଭାଷାରେ ଅପମାନ ଦେଉଛି ! ମୁଁ ତାର ଚାକର ହେବାକୁ ଯୋଗ୍ୟ ନୁହେଁ । ମୁଁ ମୂର୍ଖ ! ବେଇମାନ ! ହାୟ ! ଚାକର ଦ୍ୱାରା ମତେ ଅପମାନ ଦେବାକୁ କୁସୁମ କହିପାରିଲା । ଦିନେ ଭକ୍ତି ଓ ଶ୍ରଦ୍ଧା ସହ ଯିଏ ମୋର ସେବାକରି ଜୀବନ ରକ୍ଷା କରିଥିଲା ସେହି ଆଜି ଅପମାନ ଦେଉଛି ।

ପ୍ରିୟରଂଜନ ନୀରବରେ ସହିଗଲେ । ନିଜ ଘର ନୁହେ ଯେ ରକ୍ତ ଆଖି ଦେଖାଇ ଚପାଇ ଦେବେ । ସେ ଚୁପ୍ ଚାପ୍ ଚାଲିଗଲେ । ଠାକୁର ଗୌନ୍ତିଆ କହିଲେ, ମା' ତୁ ଠିକ୍ କଲୁ ନାହିଁ । କସୁମୀ କହିଲା, ବାପା ! ସେ ଲୋକଟା ଅକୃତଜ୍ଞ । ଉପକାରୀକୁ କିପରି ସନ୍ମାନ ଦିଆଯାଏ ଜାଣେ ନାହିଁ । ତାପରି ଯୌତୁକ ଲୋଭୀକୁ ବିବାହ କରିଥିଲେ ମୋର ମାନସିକ ମୃତ୍ୟୁ ଘଟିଥାନ୍ତା । ମୋ ପାଇଁ ତୁମେ ବ୍ୟସ୍ତ ହୁଅନା ବାପା । ଭାଗ୍ୟରେ ଯାହା ଥିବ ନିଶ୍ଚୟ ଘଟିବ ।

ଠାକୁର ଗୌନ୍ତିଆ ରକ୍ତାକ୍ତ ମନନେଇ ବାହାରକୁ ଚାଲିଗଲେ ।

କୁସୁମୀ ଦୀର୍ଘ ନିଶ୍ୱାସ ଛାଡ଼ି କହିଲା ଶୁଣିଲୁତ ଫୁଲଗଣୀ । ମୁଁ ଯଦି ପ୍ରିୟରଂଜନର କାମାନଳରେ ନିଜକୁ ଆହୁତୀ ଦେଇ ଥାନ୍ତି । ଆଜି କଳଂକିନୀ ହୋଇ ଅନୁଶୋଚନାରେ ଜଳୁଥାନ୍ତି । ପ୍ରତ୍ୟେକ ନାରୀ ନିଜର ଚରିତ୍ରକୁ ଶୁଦ୍ଧ ରଖିବାକୁ ପ୍ରଥମରୁ ଚେଷ୍ଟା କରିବା ଉଚିତ ।

—ଅପା !

—ଉଁ ।

—ତୋ ମନରେ····

—ମୋ.ତେ ଦୁଃଖ ନାହିଁ ।

—ପ୍ରିୟନଞ୍ଜନ ଚାଲିଗଲେ ।

—ତୀବ୍ର ଅପମାନ ପାଇ ଯାଇଛନ୍ତି ।

—ଆଉ ବୋଧେ····

—ପଥ ପଚ୍ଛରି ପିତାଘର ଯିବୁ, ଆଉ ଅଯୋଧ୍ୟାକୁ ମନେ ନ ପକାଇବୁ । ବୁଝିଲୁ ଫୁଲଗଣୀ ଯେଉଁମାନେ ଯୌତୁକ ନେଇ ସ୍ତ୍ରୀର ଚାକର ହେଉଛନ୍ତି ସେମାନେ ମନେ ରଖିବା ଉଚିତ । ସ୍ୱାମୀ ସ୍ତ୍ରୀର ଦେବତା ହେବା ଉଚିତ । ଦେବତା ନ ହୋଇ ଯେଉଁମାନେ ଚାକର ହେବେ ସେମାନେ ସ୍ତ୍ରୀ ଠାରୁ ସ୍ନେହ-ପ୍ରେମ ଓ ପୂଜା ପରିବର୍ତ୍ତେ ପାଇବେ କଟୁକ୍ତି ବ୍ୟଙ୍ଗୋକ୍ତି ।

—ଅପା ! ତୁ ତା'ହେଲେ ମାତାଜୀ ହେବୁ ନା କ'ଣ ।

—ନା, ମୁଁ ବିବାହ କରିବି ।

—ବାପା ତ ଥକିଗଲେଣି, ତୋ ପାଇଁ ବର ମିଳୁ ନାହିଁ ।

—ଭଗବାନ ଯୁଟାଇ ଦେବେ ଯେ ।

—ଭଗବାନ ଯେ ପଥର ।

—ବେଳେ ବେଳେ ପାଣି ମଧ୍ୟ ପଥର ହୋଇଯାଏ ।

—କେଜାଣି ତୋ ଭାଗ୍ୟରେ କଣ ଅଛି ।

—ଭଲ ଯୋଗତ ନିଶ୍ଚୟ ଅଛି । ମୋ ପାଇଁ ନିଶ୍ଚୟ ଗୋଟାଏ ସୁନ୍ଦର ବର ରହିଛି । ବେଳ ପଡଲେ ବଳେ ଆସି ହାଜର ହେବ । ଚାଲ, ଭୋକ ହେଲାଣି ଖାଇବା ।

ଫୁଲରାଣୀ ଆଶ୍ଚର୍ଯ୍ୟରେ କହିଲା, ପ୍ରିୟରଞ୍ଜନଙ୍କୁ ଅପମାନ ଦେଇ ତଡଦେଲୁ । ତୋ ମନରେ ତ ଲେଶମାତ୍ର ଦୁଃଖ ନାହିଁ ଲୋ ଅପା !

—ଦୁଃଖ କାହିଁକି ହେବ । ତାଙ୍କୁ ତ ବାହ୍ରା ହେବା ପାଇଁ ବାର ଓଷା ତେର ପର୍ବ କରୁ ନଥିଲି ଯେ ମନ ଦୁଃଖ ହେବ । ଆସିଲୁ, ଭୋକ ହେଲାଣି ।

ଫୁଲରାଣୀ ଓ କୁସୁମୀ ଏକ ପାତ୍ରରେ ଖାଇ ବସିଲେ । ସାଧବାଣୀ ପାଖରେ ବସି କହିଲା, ଏମିତିଆ ଟାଣ ଗ୍ରହ ଯେ ବର ମିଳୁ ନାହାନ୍ତି । ବାହ୍ରା ହେବ ନା ମାତାଜୀ ହେବ ଗୋ ନଣନ୍ଦ ?

କୁସୁମୀ କହିଲା, ବାଜେ କଥା ରଖ । କାଲି ମାର୍ଗଶିର ଯାତ୍ରା । ତୁମେ ଯିବତ ଭଉଜ ?

—ତୁମେ ?

—ମୁଁ ନିଶ୍ଚୟ ଯିବି । ତୁମକଥା କୁହ ।

—ତୁମ ଭାଇ ଯିବେ ?

—ହଁ ।

—ବାପା ଆଦେଶ ଦେଲେ ଯିବି ।

କୁସୁମୀ କହିଲା ମୁଁ ତୁମପାଇଁ ବାପାଙ୍କୁ କହିବି । କାଲି ସନ୍ଧ୍ୟାରେ ଏଠାରୁ ବାହାରି ଯିବା । ଘଡି ଦଶଟା ପରେ ଫେରିବା । ଭାଇଙ୍କୁ କହିଲେ ଶଗଡ଼ ଠିକ୍ କରି ପାଲ ଟାଣି ଦେବେ । ଯାହା ପଇସା ଖର୍ଚ୍ଚ ହେବ ତୁମେ ଦେବ । ମନେ ରହିଲା ଭଉଜ ?

·ହଁ, ଯାହା ଖର୍ଚ୍ଚ କରିବ ମୁଁ ଦେବି ।

—ମୋ ସୁନା ଭଉଜକୁ ଠାକୁରେ ବଞ୍ଚାଇ ରଖନ୍ତୁ ।

ସାଧବାଣୀ ହସିବାକୁ ଲାଗିଲା । ଫୁଲରାଣୀ ମଜାକରି·କହିଲା ହସିବ ପଛରେ ମ ଭଉଜ ···ଆଗ ଖାଇବାକୁ ଦିଅ । ଦେଖୁନା ଥାଳିରେ ଆଉ ଭାତ ନାହିଁ ।

× × ×

ମାର୍ଗଶିର ଯା ତ୍ରା । ଏ ଯାତ୍ରା ଏ ଅଞ୍ଚଳରେ ପ୍ରସିଦ୍ଧ ।

ଯାତ୍ରା ସ୍ଥଳଟିର ଠିକ୍ ମଧ୍ୟ ଭାଗରେ ମହାଦେବ ମନ୍ଦିର । କେବେ କେଉଁକାଳରେ ଜଣେ ଧାର୍ମିକ ରାଜା ଏହି ମନ୍ଦିରଟି ପ୍ରତିଷ୍ଠା କରିଥିଲେ ।

ଆଜି ମହାଦେବଙ୍କର ପ୍ରତିଷ୍ଠା ଦିବସ ।

ଧୀରେ ଧୀରେ ଯାତ୍ରୀମାନଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି । ହଜାର ହଜାର ଯାତ୍ରୀ ଛୁଟି ଆସିଛନ୍ତି ଏହି ପବିତ୍ର ସ୍ଥାନରେ ଏକଜୁଟ ହେବାପାଇଁ ।

ଧର୍ମବୀର, ସାଧବାଣୀ, କୁସୁମୀ ଓ ଫୁଲରାଣୀ ହାତ ଧରାଧରି ହୋଇ ଭିଡ଼ ଠେଲି ଚାଲିଛନ୍ତି । କୁସୁମୀ ଦେଖିଲା ତିନି ଚାରି ବର୍ଷର ଝିଅଟିଏ ହାତତୋଳି କାନ୍ଦୁଛି । ବାବା କହି ରଡ଼ ଛାଡ଼ୁଛି ।

ସହି ପାରିଲାନାହିଁ ସେ । ସତେ ଯେମିତି ତାର ନାରୀ ହୃଦୟରେ ସନ୍ତାନବତ୍ସଳା ଭାବ ଜନ୍ମନେଲା । ସେ କୋଳକୁ ନେଲା ।

ଝିଅକୁ । ଆଶ୍ଚର୍ଯ୍ୟ ! ଝିଅଟି କାନ୍ଦ ବନ୍ଦକରି କୁସୁମୀକୁ ଜାବୁଡ଼ ଧଇଲା । ସାଧବାଣୀ କହିଲା, କାହାର ଝିଅ ଇଏ ?

ଫୁଲରାଣୀ କହିଲା, ଏତେ ଭିଡ଼ । ବୋଧେ ପିଲାଟି ବାପ ମା'ଠାରୁ ଅଲଗା ହୋଇଯାଇଛି ।

ଧର୍ମବୀର କହିଲା, ନିଶ୍ଚୟ ଏହାର ବାପ ମା' ଖୋଜୁ-ଥିବେ । ସମସ୍ତେ ଆଗେଇ ଚାଲିଲେ ।

ଝିଅଟି କୁସୁମୀ କୋଳରେ ଥାଇ ଏଣେତେଣେ ଚାହୁଁ-ଥାଏ । ଖୋଜିଲା ଆଖିରେ ଦେଖୁଥାଏ । କୁସୁମୀ କହିଲା, ତୋ ବାପା ବୋଉ ଆସିଥିଲେକି ଯାତ୍ରାକୁ ?

—ହଁ ।

—ତୁ ହଜିଗଲୁ ନା ?

—ବାପା ମୋତେ ଛାଡ଼ଦେଲେ ମନୁଆଁ ସାଥିରେ ।

—ବୋଉ ?

—ମୋର ବୋଉ ନାହିଁ । ମରିଯାଇଛନ୍ତି । ତାଙ୍କୁ ମୁଁ ଦେଖିନି ।

—ବାପା କୁଆଡ଼େ ଗଲେ ?

—ଏଇଠି ଥିଲେ । ମତେ ମନୁଆଁ କାନ୍ଧରେ ବସାଇଥିଲା, ମୋ ଗଳାରୁ ସୁନାହାରଟାକୁ ଛିଡ଼ାଇ ନେଇ ପଳାଇଗଲା ।

—ମିନା···ମିନା···ତୁ ଏଇଠି !

କହି କହି ଭିଡ ଠେଲି ପହଞ୍ଚିଗଲେ ଅନଙ୍ଗ ଦାସ ।

ଅନଙ୍ଗ ଦାସ ଜଣେ ଶିକ୍ଷକ ।

ଘର ସମ୍ବଲପୁର ସହରରେ ।

ବୟସ ଛବିଶ । ଉଚ୍ଚ ଶିକ୍ଷିତ । ସ୍ୱାସ୍ଥ୍ୟ ଉତ୍ତମ । ସେ ମୋଟର ବାଇକ୍ ଯୋଗେ ଚାକର ମନୁଆଁ ସହ ଏକମାତ୍ର ଝିଅ ମିନାଙ୍କୁ ନେଇ ଏଠାକୁ ଆସିଛନ୍ତି । ସ୍ତ୍ରୀ ମଧୁମିତା ମିନାକୁ ଜନ୍ମଦେଇ ପରପାରିକୁ ଚାଲିଗଲା ପରେ ହତାଶ ହେଲେ ଅନଙ୍ଗ ଦାସ । ଏତେ କମ୍ ବୟସରେ ବିପତ୍ନୀକ ହେଲାପରେ ମଧ୍ୟ ଦ୍ୱିତୀୟ ବିବାହ ଆଜି ସୁଦ୍ଧା କରି ନାହାନ୍ତି ।

ମିନା ଚାରିବର୍ଷର ବାଳିକା ।

ସ୍ତ୍ରୀ ମରିବା ମଧ୍ୟ ଚାରିବର୍ଷ ହୋଇଛି ।

ଝିଅଟିକୁ ଘରେ ଛାଡ ନଆସି କର୍ମକ୍ଷେତ୍ରକୁ ନେଇଆସି-ଥିଲେ । ସେ ସହ ଶିକ୍ଷୟିତ୍ରୀ ମଣିମାଳା ଦେବୀ ମିନାର ଦାୟିତ୍ୱ ନେଇଛନ୍ତି ।

ମଣିମାଳା ଅବିବାହିତ ବୋଲି ଲୋକେ କହନ୍ତି ।

ବୟସ ଚାଳିଶି ଟପିଛି !

ଏକା ।

ତାଙ୍କ ଘରଦ୍ୱାର କେଉଁଠି କେହି ଜାଣେନା ।

ଅବିବାହିତ ଥାଇ ମଧ୍ୟ ସିନ୍ଦୁର ପିନ୍ଧିବାକୁ ମଣିମାଳା ଭୁଲନ୍ତି ନାହିଁ ।

ହାତରେ ଚୂଡ଼ି ପିନ୍ଧନ୍ତି ।

ବେଳେବେଳେ ଶୂନ୍ୟକୁ ଚାହିଁ ଭାବନାରେ ହଜନ୍ତି । ଚାକିରୀ କରିବା ଦଶବର୍ଷ ହୋଇ ଯାଇଛି ! ତାଙ୍କ ଜୀବନୀ ସମ୍ପର୍କରେ କେହି କହିପାରନ୍ତି ନାହିଁ । ଏକ ଅବୋଧ କବିତା ପରି ମଣିମାଳା ଛନ୍ଦହୀନ । ସ୍ୱାଦହୀନ ।

ମଣିମାଳାଙ୍କ କ୍ୱାଟରକୁ ଲାଗିଥିବା କ୍ୱାଟରଟି ଅନଙ୍ଗ ବାବୁଙ୍କର । ଜନ୍ମସ୍ଥାନରେ ବାପ-ମା' ସାନଭଉଣୀ ଏବଂ ଚାକର କୋଠିଆ ଅଛନ୍ତି । ଧନ ସମ୍ପଦର ଅଭାବ ନାହିଁ । ବାବା ତାଙ୍କର ବ୍ୟବସାୟ କରନ୍ତି । ଭଉଣୀଟି ପି:ଏଚ୍: ପାଶ୍ କଲାପରେ ଘରେ ରହୁଛି । ବିବାହ ହୋଇନାହିଁ ।

ବାବା-ମା ବାଧ୍ୟକଲେ ଅନଙ୍ଗକୁ । ତୁ ବିବାହ କର । ମଧୁମିତାକୁ ହରାଇଲା ପରେ ଅନଙ୍ଗ ଦାସ ଆଉ ବିବାହ କରିବେ ନାହିଁ ବୋଲି ସ୍ଥିର କରିନେଲେ । ବାବା-ମା କୁଳ ରକ୍ଷା ନିମନ୍ତେ ତାଙ୍କୁ ଦ୍ୱିତୀୟ ବିବାହ ପାଇଁ ବହୁବାର ବାଧ୍ୟ କଲେଣି । ସମୟ ନେଇଛନ୍ତି ସେ । ପୁଅର ମନ ବଦଳିବା ପର୍ଯ୍ୟନ୍ତ ଅପେକ୍ଷା କରିଛନ୍ତି ବାପ ମହେଶ୍ୱର ଦାସ । ଦିନପରେ ଦିନ ଗଡ଼ି ଚାଲିଛି । କୌଣସି ସିଦ୍ଧାନ୍ତରେ ପହଞ୍ଚି ନାହାନ୍ତି ସେ । ବିବାହ କଲେ ମୀନାର ଅବସ୍ଥା ହୁଏତ ଖରାପ ହୋଇ-ପାରେ । ଏଠାରେ ମିନାକୁ ନେଇ ସେ ରହନ୍ତି ଏକା ।

ମନୁଆଁ ଚାକର-ପୂଜାରୀ ସବୁ ଅଛନ୍ତି ।

ଦିନରେ ମିନା ତା ପାଖରେ ରହେ । ରାତିରେ ମଣିମାଳାଙ୍କ ନିକଟରେ ରହେ । ଆଜି ଯାତ୍ରା ବୁଲାଇ ନେବାପାଇଁ ମନୁଆ

ସହ ମିନାକୁ ନେଇ ଆସିଥିଲେ ଅନଙ୍ଗ ଦାସ । ମନୁଆ ମିନାକୁ ଯାତ୍ରା ବୁଲାଇ ଦେଖାଇ ନେବାପାଇଁ ଅନଙ୍ଗଙ୍କ କୋଳରୁ ଆଣି ତା ଗଳାରୁ ସୁନା ଚେନ୍‌ଟି ଛିଣ୍ଡାଇ ନେଇ ପଳାଇ ଯାଇଛି । ଅନଙ୍ଗ ବାବୁ ଚ'ଖାଇସାରି ବହୁ ସମୟ ମନ୍ଆକୁ ଅପେକ୍ଷା କଲେ । ସେ କିନ୍ତୁ ଫେରିଲା ନାହିଁ । ସନ୍ଦେହରେ ପଡ଼ି ମିନାକୁ ଖୋଜି ଖୋଜି ସାରା ଯାତ୍ରାଟାକୁ ପରିକ୍ରମା କଲେ ଅନଙ୍ଗ ଦାସ । ଦେଖିଲେ କୁସୁମୀ କୋଳରେ ମିନା ବେଶ୍ ଆନନ୍ଦରେ ହସୁଛି । ସେ ପ୍ରଥମେ ବିଶ୍ୱାସ କରି ପାରିଲେ ନାହିଁ ଯେ, କୁସୁମୀ ଜଣେ ଅପରିଚିତା ! ମନେହେଲା କେଉଁଠି ଦେଖିଲା ପରି । ସେ ଯାହାକୁ ବହୁବାର ଦେଖିଛନ୍ତି ସେ ଠିକ୍ ଏହି କୁସୁମୀ ପରି । ତେବେ କିଏ ସେ ନାରୀ ?

—ଆପଣଙ୍କ ଝିଅ ।

—ପ୍ରଶ୍ନକଲା ଧର୍ମବୀର । ଅନଙ୍ଗ କୃତଜ୍ଞତା ଜଣାଇଲେ ।

—ହଁ, ମୋ ଝିଅ ! ମୁଁ ଚି' ଷ୍ଟଲରେ ବସିଗଲି । ମୋ ଚାକର ମନୁଆ ଝିଅକୁ ବୁଲାଇ ନେବାପାଇଁ ନେଇ ଆସିଲା । ଅନେକ ସମୟ ଅପେକ୍ଷା କଲାପରେ ସନ୍ଦେହ ହବାରୁ ଖୋଜିବାକୁ ଆସିଲି ।

ଧର୍ମବୀର କହିଲା, ଝିଅ କହୁଛି ମନୁଆ ତା ହାରଟାକୁ ଛେଗଇ ନେଇଛି ।

ମ୍ଲାନହସି ଅନଂଗ ଦାସ କହିଲେ; ମନୁଆକୁ ମୁଁ ଭାଇପରି ସ୍ନେହ କରେ । ପାଠ ପଢ଼ାଏ । ମସକୁ ମାସ ଦରମା ଦିଏ । ଯାହା ଚାହେଁ ଦିଏ । ସେଥିର ମଜୁରା ମୋ ଝିଅ ବେକରୁ ହାର ନେଇକରି ଗଲା । ଏ ସଂସାରଟା ତ ଏଇଆ ।

ଯାହାର ଖାଇବେ ତାଆରି ଗଳାରେ ଛୁରୀ ଦେବାକୁ ଲୋକେ ବିଳମ୍ବ କରିବେ ନାହିଁ । ଏଇ ଦେଖୁନା' ମନୁଆଁ କିପରି ବେଇମାନ କଲା । କୁସୁମୀ ମିନାକୁ କହିଲା, ଏହିଯେ, ତୁମ ବାବା ଆସିଛନ୍ତି, ଯାଅ । ଅନଙ୍ଗ ଦାସ ହାତ ପାତିଲେ ।

ଆ, ଯିବାନିକି ମା ! ଆସିଲୁ । କାନ୍ଦନା, ମୁଁ ତୋ ପାଇଁ ହାର କିଣିଦେବି ।

ମିନା କିନ୍ତୁ କୁସୁମୀକୁ ନ ଛାଡେ ।

ଅନଙ୍ଗ ବାରମ୍ବାର ଡାକିଲେ ।

ମିନା ଶୁଣିଲା ନାହିଁ । ଓଲଟି ଯୋରକରି କୁସୁମୀକୁ ଧରିନେଲା ।

ନା, ମୁଁ ଯିବିନାହିଁ । ତୁମେ ଯାଅ ବାବା ମୁଁ ଯିବିନି । ଧର୍ମବୀର ଆଶ୍ଚର୍ଯ୍ୟ ହେଲା ।

ସାଧବାଣୀ ଓ ଫୁଲରାଣୀ ହସିଲେ ।

ଅନଙ୍ଗ ଦାସ କହିଲେ, ଆରେ ମିନା ! ମୋ କୋଳକୁ ଆ ! ରାତି ହୋଇଯିବ ଯେ···ଘରକୁ ଯିବାଯେ । ମଣିମାଳା ଦେବୀ ତୋତେ ଖୋଜୁଥିବେ ।

ମିନା ମୁହଁ ଘୁରାଇ ନେଲା ।

କୁସୁମୀକୁ ଭିଡ଼ ଧରିଲା ।

ନାଇଁ ବାବା··· ନାଇଁ ···ଯିବିନି ।

ଅନଙ୍ଗ ବାବୁ ତାକୁ ଯୋରକରି ଟାଣିନେଲେ । କାନ୍ଦ ଉଠିଲା ମିନା । ଫୁଲରାଣୀ କହିଲା,ଦେଖୁଛନ୍ତତ ଆପଣଙ୍କ ଝିଅ ଆଉ ଆପଣଙ୍କର ହୋଇ ନାହିଁ । ସେ ମୋ ଅପାର ଝିଅ ।

ଧର୍ମବୀର କହିଲା, ଆପଣ ତାକୁ ଜୋର କରନ୍ତୁ ନାହିଁ । ଦେଖିଲତ ଝିଅ ମୋ ଭଉଣୀକୁ ଛାଡବାକୁ ନାରଜ ।

ଅନଙ୍ଗ ଦାସ କହିଲେ, ମୁଁ ଆଶ୍ଚର୍ଯ୍ୟ ହୋଇ ଯାଉଛି । ମଧୁମିତା ମଲାବେଳକୁ ମିନା ହୋଇଥିଲା ମାତ୍ର ଏକମାସର । ଏକମାସର ପିଲା ଆଜି ଚାରି ବର୍ଷର ହୋଇଛି ମୋ କୋଳରେ ଚିହ୍ନା ପରିଚୟ ନାହିଁ । ଜଣାଶୁଣା ନାହିଁ । ମିନା ମୋ ନିକଟକୁ ଆସୁନାହିଁ । ମଣିମାଳା ଦେବୀ ମୋର ଜଣେ ସହଶିକ୍ଷୟିତ୍ରୀ । ରାତିରେ ତାଙ୍କରି ପାଖରେ ରହେ । ଆଜି ତାର ପରିବର୍ତ୍ତନ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଛି ।

—ଧର୍ମବୀର କହିଲେ, ଆପଣଙ୍କ ଘର ?

—ସମ୍ବଲପୁର ସହରରେ ।

—ଏଠାରେ ରହନ୍ତି କେଉଁଠି ?

--ହାଇସ୍କୁଲରେ ଶିକ୍ଷକତା କରେ ।

--ଆମ ଘର ପାହାଡଆ ପଡ଼ା ।

—ସତେ !

—ଠାକୁର ଗୌରାଙ୍ଗଆଙ୍କୁ ଜାଣନ୍ତି ?

—ଜାଣେ ।

—ମୁଁ ତାଙ୍କରି ପୁଅ ଧର୍ମବୀର । ଏ ମୋର ସ୍ତ୍ରୀ ସାଧନାଣୀ । ଆଉ ଏ ଦୁହେଁ ମୋର ଭଉଣୀ । ଆମେ ଝିଅକୁ ନେଇ ଯାଉଛୁ । ଆପଣ କାଲି ଆସି ନେଇଯିବେ ।

—ନିରୁପାୟ୍ ହେଲେ ଅନଙ୍ଗ ଦାସ ।

—ଠିକ୍ ଅଛି, କା'ଲିଯାଇ ନେଇ ଆସିବି । ନମସ୍କାର ।

ଚାଲିଗଲେ ଅନଙ୍ଗ ଦାସ ! ଧର୍ମବୀର କହିଲେ, ଶୀଘ୍ର ଯାତ୍ରା ଦେଖା କାମ ଶେଷକର । ଘରକୁ ଫେରିଯିବା । ମିନା କୁସୁମୀ କୋଳରେ ଥାଇ ହସୁଥିଲା ।

× × ×

ରବିବାର ସକାଳ । ଅନଙ୍ଗ ଦାସ ଠାକୁର ଗୌନ୍ତିଆଙ୍କ ଘରେ ପହଞ୍ଚିଲେ । ଦେଖିଲେ ମିନାକୁ ସୁ-ବେଶ କରୁଛି କୁସୁମୀ ।

ଧର୍ମବୀର ବସିବାକୁ ଅନୁରୋଧ କଲେ । ଆସନ ଗ୍ରହଣ କଲେ ଅନଙ୍ଗ ବାବୁ । ଧର୍ମବୀର ତାଙ୍କ ଚର୍ଚ୍ଚାପାଇଁ ଘର ଭିତ-ରକୁ ଚାଲିଗଲେ । ଅନଙ୍ଗଙ୍କୁ ଚାହିଁ ମିନା ଦରୋଟି କଣ୍ଠରେ କହିଲା, ବାବା ! ମୁଁ ଏଇଠି ରହିବି । ପାଠ ପଢ଼ିବି । କୁସୁମୀ ମୋର ମା ହେବାକୁ କହୁଛନ୍ତି ।

ଚମକ ଖେଳିଗଲା ଅନଙ୍ଗଙ୍କ ଶିରା ପ୍ରଶିରାରେ । ମିନା ଏ କ'ଣ କହୁଛି ।

ଫୁଲଗଣୀ ପହଞ୍ଚି ନମସ୍କାର କରି କହିଲା, ଦେଖୁଛନ୍ତ.... ମିନା ଆଉ ଅପାକୁ ନ ଛାଡେ । ଅପା ବି ତାକୁ ଲୋଭେଇ ଯାଇଛି । କାଲିଠାରୁ ମିନା ସେବାରେ ଲାଗିଛି ।

ଠାକୁର ଗୌନ୍ତିଆ ପହଞ୍ଚିଲେ ।

ଅନଙ୍ଗ ତାଙ୍କୁ ନମସ୍କାର କଲେ ।

ଅନେକ ସମୟ ଆଳାପ ଚାଲିଲା । ଅନଂଗ ଦାସ ତାଙ୍କ ଜୀବନର କାହାଣୀ ଶୁଣାଇ ଦେଲେ । ଠାକୁର ଗୌନ୍ତିଆ ମଧ୍ୟ ତାଙ୍କ ସମ୍ପର୍କରେ ସଂକ୍ଷିପ୍ତ ଟିପ୍ପଣୀ ଦେଲେ । ପରେ କୁସୁମୀ ସମ୍ପର୍କରେ କିଛି ଗୋପନ ନ ରଖି ପ୍ରକାଶ କରି-ଦେଲେ । ଶେଷରେ କହିଲେ, ମିନା କୁସୁମୀକୁ ଆଦରି ଯାଇଛି । ଆପଣ ଯଦି କିଛି ନ ଭାବନ୍ତି ମୁଁ ତେବେ ଗୋଟାଏ ପ୍ରସ୍ତାବ ଦିଅନ୍ତି ।

ଅନଂଗ ଜାଣି ପାରିଲେ ଠାକୁର ଗୌନ୍ତିଆ କଣ କହିବାକୁ ଚାହାଁନ୍ତି ।

ଗୌନ୍ତିଆ କହିଲେ, ଯଦି କିଛି ମନେ ନ କରନ୍ତି କୁସୁ-ମୀକୁ ମୁଁ ଆପଣଙ୍କ ହାତରେ ଟେକି ଦେବାକୁ ଚାହେଁ ।

ବାପାଙ୍କ ମୁହଁର କଥା ଶୁଣିବା ମାତ୍ରେ କୁସୁମୀ ମିନାକୁ ନେଇ ସେ ସ୍ଥାନ ତ୍ୟାଗ କଲା । ଅନଂଗ ଦାସ କିଛି ସମୟ ନୀରବ ହୋଇଗଲେ । ଏହା ମଣିଷର କୃତ୍ୟ ନୁହେଁ । ଭଗ-ବାନଙ୍କର ଖେଳ ବୁଝିବା ସତରେ ମଣିଷ ପକ୍ଷେ ଅସମ୍ଭବ ।

କୁସୁମୀ କିଏ, ମିନା ବା କିଏ, କିଏ ବା ଅନଂଗ ଦାସ । ବିଶ୍ୱସ୍ତ ମନୁଆଁ ମିନାକୁ ଛାଡ଼ ପକାଇଗଲା । କୁସୁମୀ ମିନାକୁ ପାଇ କୋଳକୁ ନେଲା । ଆଶ୍ଚର୍ଯ୍ୟର କଥା ଯେ, ମିନା ତାକୁ ଆଦରି ନେଇଛି । ଏଠାରେ ଠାକୁର ଗୌନ୍ତିଆ କନ୍ୟା ଦାନ କରିବା ପାଇଁ ପ୍ରସ୍ତାବ ଦେଲେଣି । ଅନଂଗ ଭାବିଲେ, କୁସୁମ ସମ୍ପର୍କରେ ମୁଁ ବିଶେଷ କିଛି ନ ଜାଣିଲେ ମଧ୍ୟ ଯେତିକି ଜାଣିଛି ସେ ଅନେକ ଗୁଣର ଅଧିକାରିଣୀ । ମାତୃହୀନା ମିନାର ଦାୟିତ୍ୱ ନିଶ୍ଚୟ ତୁଲାଇ ପାରିବ ।

କୁସୁମୀ ଠାକୁର ଗୌନ୍ତିଆଙ୍କ ପାଳିତା କନ୍ୟା । ଜାତି ଗୋତ୍ର ସମ୍ପର୍କରେ କିଛି ପରିଚୟ ନାହିଁ । ତଥାପି କୁସୁମୀକୁ ଗ୍ରହଣ କରିବା ଉଚିତ ହେବ । କାରଣ ତାକୁ ମିନା ପସନ୍ଦ କରିଛି । ପବିତ୍ର ହୃଦୟ ମିନାର । ସଂସାରର ଭଲ ମନ୍ଦ ତାକୁ ଛୁଇଁନାହିଁ । ସେ ଚିହ୍ନିଛି କୁସୁମୀକୁ ।

ଗୌନ୍ତିଆ କହିଲେ, କିଛି କହିଲ ନାହିଁତ ବାବୁ ?

ଚିନ୍ତା ତ୍ୟାଗ କରି ଅନଙ୍ଗ ଦାସ କହିଲେ ମୁଁ ଆପଣଙ୍କ ଆଦେଶ ପାଳନ କରିବି । ଆପଣ ମୋ ବାବାଙ୍କ ସହିତ ସାକ୍ଷାତ କରନ୍ତୁ, ମୋର ସନ୍‌ମତି କଥା ତାଙ୍କୁ ଜଣାଇବେ । କୁସୁମୀ ଯଦି ମୋ ଭଙ୍ଗା ଘରକୁ ସଜାଡ଼ ଦେଇ ପାରିବେ ମୁଁ ଖୁସିହେବି ।

ଠାକୁର ଗୌନ୍ତିଆ ଆନନ୍ଦରେ ଅନଙ୍ଗକୁ ଆଲିଙ୍ଗନ କରି କହିଲେ୍ ଏତେ ଦିନ ପରେ ଜଣେ ମଣିଷକୁ ପାଇଛି । ମୋର ଭାଗ୍ୟ ।

× × ×

ବିଧି ବିଧାନ ଅନୁଯାୟୀ ଅନଙ୍ଗଙ୍କ ସହିତ କୁସୁମୀର ବାହାଘର ହେଲା ଏକମାସ ପରେ । ଅନଙ୍ଗ ମଣିମାଳାଙ୍କୁ ନିମନ୍ତ୍ରଣ କରି ନିଜ ଘରକୁ ଡାକି ଦେଇଥିଲେ । ବିବାହ ପରେ କୁସୁମୀ ସହ ଟ୍ୟାକ୍‌ସିରେ ବସିଲାବେଳେ ଲୁହ ଛଳଛଳ ନୟନରେ ଟ୍ରଙ୍କଟିଏ ଧରି ଠାକୁର ଗୌନ୍ତିଆ କହିଲେ, ଅନଙ୍ଗ ! ମୁଁ ଯେଉଁଦିନ କୁସୁମୀକୁ ବଣରୁ ପାଇଲି ତା ପାଖରେ ଏହି ଟ୍ରଙ୍କଟି ଥୁଆ ହୋଇଥିଲା । ଚିଠିରେ ଉଲ୍ଲେଖ ଥିଲା କୁସୁମୀର ବିବାହ

ପରେ ଟ୍ରଙ୍କଟିକୁ ତା ହାତରେ ଦେବାକୁ । ତୁମେ ନିଅ, ଖୋଲି ଦେଖିବ ଏହା ମଧ୍ୟରେ କଣ ଅଛି ।

ଟ୍ରଙ୍କଟିକୁ ଗ୍ରହଣ କଲେ ଅନଙ୍ଗବାବୁ । କୁସୁମୀ ସମସ୍ତଙ୍କ-ଠାରୁ ବିଦାୟ ନେଇ ସ୍ୱାମୀ ଅନଂଗ ସହିତ ଶ୍ୱଶୁର ଘରକୁ ଯାତ୍ରାକଲା ।

× × ×

କୁସୁମୀକୁ ଦେଖି ଶାଶୁ ହରମୋହିନୀ ଆନନ୍ଦ ହେଲେ । ରୂପସୀ କୁସୁମୀର ବ୍ୟବହାର ଚଳିଚଳନ ଏବଂ ଠାଣି ସମସ୍ତଙ୍କୁ ମୁଗ୍ଧ କଲା । ମଣିମାଳାଙ୍କ ଭଳି ଅନ୍ୟମାନେ ନାନା ପ୍ରକାର ଉପହାର ଦେଇଥିଲେ । ସକାଳ ଛଅଟାରେ ବରକନ୍ୟା ପହ-ଞ୍ଚିଲା ପରଠାରୁ ଲୋକ ଗହଳି ଲାଗିରହିଛି । ମିନା ରହିଛି କୁସୁମୀ ପାଖରେ । ମଣିମାଳା ଯେତେ ଡାକୁଛନ୍ତି ଶୁଣୁନାହିଁ । ଦିନ ଦୁଇଟା ବେଳେ ମଣିମାଳା ହରମୋହିନୀ ଏବଂ ଅନ୍ୟ କେତେଜଣ ମହିଳା କୁସୁମୀ କଣ ଆଣିଛି ଦେଖିବାକୁ ଇଚ୍ଛା କରି ଘରକୁ ପଶି ଯାଇଥିଲେ । ପ୍ରଥମେ ମଣିମାଳା ଟ୍ରଙ୍କଟିକୁ ଦେଖି ଚମକି ପଡ଼ଲେ । ହରମୋହିନୀ କହିଲେ କଣ ହେଲା ମଣିମାଳା ! ତୁମେ ଏମିତି ଆଶ୍ଚର୍ଯ୍ୟରେ ଚମକି ପଡ଼ିଲ ଯେ ! କୁସୁମୀ ଓଢଣାଟାଣି ବସିଥାଏ । କିଛି ଦୂରରେ ବାରଣ୍ଡାରେ ଠିଆ ହୋଇଥିଲେ ଅନଂଗବାବୁ । ମଣିମାଳା ବିସ୍ମୟରେ କହିଲେ କୁସୁମ, ତୁମେ ଏ ଟ୍ରଙ୍କଟିକୁ କେଉଁଠୁ ପାଇଲ ? କୁସୁମୀ କହିବାକୁ କୁଣ୍ଠାବୋଧ କଲା । ସମସ୍ତ ଘଟଣା ଖୋଲି କହିଲେ ଅନଂଗବାବୁ । ମଣିମାଳା କାନ୍ଦ କାନ୍ଦ କୁସୁମୀକୁ ଧରି କହିଲେ, ତୁ ମୋର ଝିଅ ମୁଁ ତୋର ସେହି ଅଭାଗିନୀ ମା । ଦିନେ ତୋତେ ମୁଁ ଜଂଗଲରେ ଥିବା ମନ୍ଦିର ଚୌପାଢୀରେ ଶୁଆଇ

ଦେଇ ଯାଇଥିଲି । ଏହି ଟ୍ରଙ୍କଟି ମୋର । କୁସୁମୀ ଆଶ୍ଚର୍ଯ୍ୟରେ ମଣିମାଳାଙ୍କୁ ଦେଖଥିଲା । ଅନଂଗ ମଣିମାଳା ସହିତ କୁସୁମୀର ସାମଞ୍ଜସ୍ୟ ଦେଖି ତଟସ୍ଥ ହେଲେ । ହରମୋହିନୀ କହିଲେ, ତୁମେ ଏ କ'ଣ କହୁଛ ମଣିମାଳା ! କୁସୁମୀ ତୁମ ଝିଅ ହେଲା କିପରି ?

ତୁମେ ଯେ ଅବିବାହିତା !

ସମସ୍ତେ ମଣିମାଳାକୁ ଚାହିଁଛନ୍ତି ।

କୁସୁମୀ ଦେଖୁଛି ମଣିମାଳା କାନ୍ଦୁଛନ୍ତି ।

ଅନଂଗ ଭାବୁଛନ୍ତି ଗୋଟିଏ ସଂସ୍ଥାରେ ମଣିମଳା ଓ ମୁଁ କାମକରୁ ।

କାହିଁ କେବେହେଲେତ ସେ କୁସୁମ ସମ୍ପର୍କରେ ସୂଚନା ଦେଇ ନାହାନ୍ତି । ଏହି ଟ୍ରଙ୍କ ସହିତ କୁସୁମୀର ଜନ୍ମ ଇତିହାସ ଜଡିତ ଅଛି ବୋଲି ଗୌନ୍ତିଆ କହୁଥିଲେ । ପ୍ରକୃତ ତଥ୍ୟଟି କ'ଣ ହୋଇପାରେ । ଅବଶ୍ୟ ଯେ କେହି ଦେଖିବ କହିବ କୁସୁମୀ ନିଶ୍ଚୟ ମଣିମାଳାଙ୍କ କନ୍ୟା ।

ମଣିମାଳା କହିଲେ, ଆଜକୁ ଠିକ୍ ଅଠର ବର୍ଷ ତଳେ ଜନ୍ମଗ୍ରହଣ କରିଥିଲା କୁସୁମୀ, ଏ ମୋର ଝିଅ ମୁଁ ତାର ଜନନୀ । ମୁଁ ଯାହାଙ୍କ ପାଣି ଶଙ୍ଖା ସିନ୍ଦୁର ଗ୍ରହଣ କରିଛି ସେ ହେଉଛନ୍ତି ଉଚ୍ଚଶିକ୍ଷିତ ବ୍ୟକ୍ତି । ସେ ବର୍ତ୍ତମାନ ପୁରୀ ସହରରେ ରହୁଛନ୍ତି । ନାମ ତାଙ୍କର ଅନନ୍ତ ପାତ୍ର । ତାଙ୍କ ସହିତ ମୋର ସୁ-ସମ୍ପର୍କ ଥିଲା । ଦୁହେଁ ଦେବତାଙ୍କୁ ସାକ୍ଷୀରଖି ବିବାହ କରିଥିଲୁ । ଅନନ୍ତ ପାତ୍ର ଜଣେ ଅଫିସର । ମୋ ବାପା ଅଧିକ

ଯୌତୁକ ଦେବାକୁ ଅକ୍ଷମ ହେବାରୁ ସେ ଅନ୍ୟତ୍ର ବିବାହ କଲେ । ମତେ ଧୋକା ଦେଲେ । ମୁଁ ହେଲି ସନ୍ତାନ ସମ୍ଭବା । ଅନନ୍ତ ପାତ୍ର ମତେ ଠକିଲାପରେ ମୁଁ ହେଲି ଅସ-ହାୟା । ବାପା-ଭାଇ ମତେ ଘରୁ ବାହାର କରିଦେଲେ । ମାଆ ମୋ ଦୁଃଖ ସହି ନପାରି ଘରୁ ଲୁଚାଇ ଏହି ଟ୍ରଙ୍କ୍‌ଟି ଦେଇ ଥିଲେ । ଏଥିରେ ଅଛି ଗ୍ଣଦଟଙ୍କା ପାଞ୍ଚହଜାର । ଅନନ୍ତ ପାତ୍ରଙ୍କ ଫଟୋ ସମେତ କେତେକ ଅନ୍ୟାନ୍ୟ ସାମଗ୍ରୀ ।

ଟ୍ରଙ୍କଟିକୁ ଖୋଲିଲେ ଅନଙ୍ଗ ।

ମଣିମାଳା ଯାହା କହିଥିଲେ ସବୁ ସତ ।

କୁସୁମ ଏତେଦିନ ପରେ ମା'କୁ ଫେରି ପାଇଥିବାରୁ ତାଙ୍କୁ ଧରି କାନ୍ଦ ଉଠିଲା । ଗୋଟାଏ ବିରଳ ମିଳନପର୍ବ ଅନୁଷ୍ଠିତ ହେଲା ଯେପରି । ଆନନ୍ଦାଶ୍ରୁ ଦେଖାଦେଲା ସମସ୍ତଙ୍କ ଚକ୍ଷୁରେ । ଅନଙ୍ଗଙ୍କ ସାନ ଭଉଣୀ ସଖୀନା...ଯେକି କୁସୁମୀକୁ ଧରି କହିଲା ତୁମ ଭାଗ୍ୟ ଭଲମ ଭଉଜ । ଗୋଟିଏ ଦିନରେ ବାପ-ମା ଏବଂ ସ୍ୱାମୀ ପାଇଲେ । ସମସ୍ତେ ହସିଲେ ।

ମା' ସହିତ ଝିଅର ମିଳନ, ଜନନୀ ସହିତ କନ୍ୟାର ମିଳନ, ମଣିମାଳା ନିଜ ଝିଅକୁ ଅନେକ ଦିନପରେ ପାଇ ଖୁସି ହେଲେ । କୁସୁମୀ ମଧ୍ୟ ନିଜର ଜନ୍ମ ଇତିହାସ ଶୁଣି ମନସ୍ତା-ପରୁ ରକ୍ଷା ପାଇଲା । ଅନଙ୍ଗ ଦାସ ମଣିମାଳାଙ୍କୁ ଶାଶୁ ରୂପେ ଲାଭକରି କୃତାର୍ଥ ହେଲେ ।

× × ×

ବିବାହ ପରେ କୁସୁମୀକୁ ଘରେ ଛାଡ଼ି ଅନଙ୍ଗ ଓ ମଣି-ମାଳା ଚାଲି ଆସିଲେ କର୍ମଆଳକୁ । ବାବା ମା' ବାଧ୍ୟ କରି-ଥିଲେ ଅନଙ୍ଗଙ୍କୁ ।

ତୁ ବୋହୂକୁ ସାଥିରେ ନେଇଯା ଅନଂଗ । କେତେଦିନ ହାତରେ ରାନ୍ଧବାଢ଼ି ଖାଇବୁ ।

କୁସୁମୀ ମନା କରିଦେଲା, କହିଲା, ନା ମୋ ଯିବାଟା ପରେ । ଘରର ବୋହୂ ହଠାତ୍ ବାହାରକୁ ଯିବା ଠିକ୍ ନୁହେଁ । ଶାଶୁ ଶ୍ୱଶୁରଙ୍କ ପ୍ରତି ମୋର ବହୁତ କର୍ତ୍ତବ୍ୟ ରହିଛି । ଯିବାକୁ ଆଗରେ ସମୟ ରହିଛି । ମୋ ମାଆ ତ ସେହି ସ୍କୁଲରେ ରହୁ-ଛନ୍ତି । ତାଙ୍କରି ରୋଷେଇରେ ସେ ଖାଇନେବେ । ଆଗରେ ସଖୀ ନାର ବାହାଘର କାମ ଅନେକ ଅଛି । ବାହାଘର ଶେଷ ହେଉ ଟରେ ଯିବି । ଜୋର ଦେଲେ ନାହିଁ ଶାଶୁ-ଶ୍ୱଶୁର । ଶ୍ୱଶୁର ଆନନ୍ଦିତ ହେଲେ । ଚାଲିଗଲେ ଅନଂଗ ଓମଣିମାଳା । ସଖୀନା କୁସୁମୀର ହାତଧରି କହିଲା ଭଉଜ ! ଭାଇଙ୍କୁ ଛାଡ଼ି ଏକା ରହିବ କେମିତି ? ନୂଆ ମନ.... ନୂଆ ଦେହ, ନୂଆ ଅନୁଭୂତି । ବିଚ୍ଛେ ଦର ଜ୍ୱାଳା ସତରେ ଅସହ୍ୟ ?

—ଚୁପ୍ ! ଅତି ଦୁଷ୍ଟ ତୁମେ ! ତୁମର ବାହାଘର ଶେଷ ହଉ ତାପରେ ଯିବି । ସଖୀନା ହସି ହସି କହିଲା, ମୋ

ବାହାଘର ଆସନ୍ତା ଫଗୁଣରେ ?

—ହଁ ।

—ମୋ ବରଙ୍କ ନାମଟି ଜାଣିଛ କି ?

—କୁହ ।

—ପ୍ରିୟରଞ୍ଜନ ମହାପାତ୍ର ।

—ଏଁ !

—କଣ ହେଲା ଭଉଜ ? ସଖୀନା କୁସୁମୀକୁ ପଚାରିଲା ।

—ସଖିନାଠାରୁ ପ୍ରିୟରଞ୍ଜନଙ୍କ ନାମ ଶୁଣି ହଠାତ୍ ନୀରବ ହୋଇଗଲା କୁସୁମୀ । ପ୍ରିୟରଞ୍ଜନ ?

—କେଉଁ ପ୍ରିୟରଞ୍ଜନ ?

—ଅକୁତଙ୍କ ପ୍ରିୟରଞ୍ଜନ ନୁହେଁତ ?

ସଖିନା କହିଲା, ତୁମେ ଏମିତି ଗମ୍ଭୀର ହୋଇଗଲ ଯେ ? ତାଙ୍କୁ ଚିହ୍ନିଛ ନା କ'ଣ ।

ସଖିନା ।

—କଥା କ'ଣ ।

—ତୁମେ କେଉଁ ପ୍ରିୟରଞ୍ଜନ କଥା କହୁଛ ?

—ସେ କେଉଁଝରଠାରେ ଚାକିରୀ କରନ୍ତି । କ୍ଲର୍କ ଅଛନ୍ତି । ବାପାଙ୍କର ପ୍ରଚୁର ସମ୍ପତ୍ତି ଅଛି । ବେଶ୍ ସ୍ୱଚ୍ଛଳ ବ୍ୟକ୍ତି ସେ ।

—ଯୌତୁକ ଚୁକ୍ତି ସରିଛି ?

—ହଁ ।

—କେତେ ।

—ବୁଲେଟ ଗାଡ଼ି ସହ ନଗଦ ପଚାଶ ହଜାର ଟଙ୍କା ।

—ସତେ !

—ହଁ ।

—ଏତେ ଟଙ୍କା ଦେବାକୁ ବାବା ରାଜି ହୋଇଛନ୍ତି ?

—ହଁ ।

—କାହିଁକି ?

—ସବୁ ଦୃଷ୍ଟିରୁ ପ୍ରିୟରଞ୍ଜନ ବାପାଙ୍କ ମନ ମାନିଛି ।

—ଭଲ ।

—ଶୁଭଉଚ ।

—ମୁଁ ତାକୁ ଜାଣେନା । କେବଳ ଶୁଣୁଛି ମଣିଷ କେତେ ମାରାତ୍ମକ ହୋଇପାରେ । ଯୌତୁକ ନେଇ ଝିଅର ବାପାକୁ କାଙ୍ଗାଳ କରିବାକୁ ଆଜିର ବର ଓ ବରପିତା ପାଗଳ । ଠିକ୍ ଅଛି ମୁଁ ଖୁସି ହେଲି ନଣନ୍ଦ । ପ୍ରିୟରଞ୍ଜନ ସହିତ ତୁମର ମିଳନ ଶୁଭମୟ ହେଉ । ସୁଖମୟ ହେଉ ତୁମ ଦାମ୍ପତ୍ୟ ଜୀବନ ।

ସଖିନା କୁସୁମୀର ମନର କଥା ବୁଝି ପାରିଲା ନାହିଁ । ଚତୁରୀ ବୁଦ୍ଧିମତୀ କୁସୁମୀ ତାକୁ ବଦଳାଇ ଦେଲା । ଭୁଲାଇ ଦେଲା ।

କୁସୁମୀ ଏକାକିନୀ ।

ସ୍ୱାମୀ ଅନଙ୍ଗ ପରବାସରେ ।

ବିବାହ ପରେ କେତେଟା ରାତି ସ୍ୱାମୀ ସହିତ ବିତାଇଛି କୁସୁମୀ । ମନର କଥା ସରିନି । ସାଇତା କାହାଣୀ କହିପାରିନି । ମନରୁ ଭୋକ ମରିନି । ଘଟିନି ଯୌବନର ପରିପୂର୍ଣ୍ଣତା । ମନ ବୁଝେନା । ଏ ସମୟରେ ପରବାସରେ ପ୍ରୀୟ....

ଲୁହ ବାଧା ମାନେନା ।

ଫେରିଆସ ପ୍ରିୟ—ଫେରିଆସ କହି, ମନ କୋଇଲି ବିଳାପ କରେ । କାହିଁରେ ମନ ଲାଗେନାହିଁ ।

ଯୌବନ ଯମୁନାରେ ବନ୍ୟା ଆସେ । ଅନ୍ତର ଥରେ ଝଡ଼ରେ । ଧୈର୍ଯ୍ୟର ବନ୍ଧ ଭାଙ୍ଗିଯାଏ । ପ୍ଲାବନ ଛୁଟେ । ରତି ସାରା ବିତିଯାଏ ଭାବନାରେ । ତାରାଭରା ଆକାଶର ବୁକୁରେ ଗଡ ଗଡ ପୂର୍ବରୁ ପଶ୍ଚିମ ପର୍ଯ୍ୟନ୍ତ ଚନ୍ଦ୍ରମା ଚାଲିଯାଏ । ରାତି ହୁଏ ଶେଷ । ଶଯ୍ୟା ତେଜି ସ୍ନାନାଦି କାମ ଶେଷ କରେ ଅନଙ୍ଗ ଦାସଙ୍କ ଅଙ୍କ ଲକ୍ଷ୍ମୀ କୁସୁମ ।

ଏକା ନୁହେଁ ତ....ପାଖରେ ବସିଥାଏ ସଖୀନା । ସଖୀନା ପ୍ରିୟରଞ୍ଜନଙ୍କୁ ଦେଖିଛି । ସେ ଆସିଥିଲେ । କେତେଟି ପ୍ରଶ୍ନ ପଚାରିଥିଲେ ସଖୀନାକୁ । ସେହିଦିନ ଠାରୁ ପ୍ରିୟରଞ୍ଜନଙ୍କ ଫଟୋ ଚିତ୍ରଟି ନାଚି ନାଚି ଯାଏ ସଖୀନା ସମ୍ମୁଖରେ । ତାଙ୍କୁ ପାଇବାକୁ ବ୍ୟାକୁଳ ହୁଏ । ଗୋଟିଏ ପଲଙ୍କରେ ଶୁଅନ୍ତି ସଖୀନା ଓ କୁସୁମୀ । ଦୁହିଁଙ୍କ ମଧ୍ୟରେ ଅଚିନ୍ତା କାହାଣୀର ପ୍ରବାହ ବହେ ।

ରତି ଗୋଟାଏ ।

ଦୁହିଁଙ୍କ ଆଖିରେ ତନ୍ଦ୍ରା ନାହିଁ । ସଖୀନା ପ୍ରିୟରଞ୍ଜନଙ୍କ ସମ୍ପର୍କରେ ନାନା ପ୍ରକାର ଟିପ୍‌ପଣୀ ଦେବାରେ ଲାଗିଛି । ଖୁବ୍ ତାରିଫ୍ କରୁଛି । କୁସୁମୀ ପ୍ରଶ୍ନକଲା, ତୁମ ଭାବି ଶ୍ୱଶୁର ଯେତିକି ଯୌତୁକ ଦାବି କରିଛନ୍ତି ତୁମେ ସେଥିରେ ଏକମତ ସଖୀନା ।

ସଖୀନା କହିଲା, ହଁ ।

—ମନରେ କିଛି....

—ନା । କାହିଁକି ଦୁଃଖ ହେବ । ଯାହାଙ୍କୁ ନେଇ ଘର କରିବି ତାଙ୍କୁ ତ ଯୌତୁକ ଦିଆଯିବ । ତାଦ୍ୱାରା ମୋର ଲାଭ ଅଧିକ ହେବ ।

—ବାବାଙ୍କର ଶକ୍ତିକୁ ଚାହିଁ ଯୌତୁକ ଅଧିକ ହେଉ ନାହିଁକି ?

—ମୋର କଣ ଅଛି । ମୁଁ ଏଠା ସମ୍ପତ୍ତି ଓ ସମ୍ପଦରୁ ତ ଭାଗ ନେଉନାହିଁ । ଯାହା ନେବି ଥରେ ।

—ସଖିନାର ମୂର୍ଖତା ଦେଖି କୁସୁମୀ ରାଗିଗଲା । ପର-କ୍ଷଣରେ ସଞ୍ଜତ କରିନେଲା ନିଜକୁ ।

ବାପକୁ ସର୍ବସ୍ୱାନ୍ତ କରିବାକୁ କେଉଁ ଝିଅ ଚାହେଁ ।

ଯୌତୁକ ଗୋଟାଏ ପକ୍ଷରୁ ରୋକାଯାଇ ନପାରେ । ସବୁ-ପୁଅ ଝିଅ ଯଦି ସମସ୍ୱରରେ ଯୌତୁକ ବିରୁଦ୍ଧରେ ସଂଗ୍ରାମ କରନ୍ତି ତେବେ ଲୋଭୀ ବାପ ମା'ମାନେ ମୁହଁ ଲୁଚାଇ ମରନ୍ତେ ।

ଯୌତୁକ ବନ୍ଦକର ।

ଯୌତୁକ ପ୍ରଥାର ବିଲୋପ ସାଧନ କର ।

ଯୌତୁକ ବର୍ଜନ କର ।

ବିନା ଯୌତୁକରେ ବିବାହ କର ।

ଏଗୁଡ଼ାକ ଖାଲି ବୃଥା ସ୍ଲୋଗାନ । କେବଳ କଥାରେ । କାମରେ ପାଳନ କରିବା ପ୍ରକୃତ ମଣିଷର କର୍ତ୍ତବ୍ୟ ।

ଏହି ଯୌତୁକ ରାକ୍ଷସର ଶିକାର ହୋଇ କେତେ ଯେ ଅଭଗିନୀ ନାରୀ ଅକାଳରେ ମୃତ୍ୟୁ ବରଣ କରୁଛନ୍ତି ତାର ସଠିକ୍ ହିସାବ ହୁଏତ ସମାଜ ରଖିପାରି ନାହିଁ ।

ଯୌତୁକର ଲୋଭ ଆଜି ମଣିଷକୁ ପଙ୍ଗୁ କରି ପକାଇଛି । ମୁଁ ବିବାହ କରିଛି ଅନଙ୍ଗ ଦାସଙ୍କୁ ।

ଯୌତୁକର ପ୍ରଶ୍ନ ନାହିଁ । ବାପା ଯାହାଦେଲେ ଶଶୁର ତାହାହିଁ ଗ୍ରହଣ କରିନେଲେ ।

ମୋ ଜାତିଗୋତ୍ର ନାହିଁ ବୋଲି ଯେଉଁ ପ୍ରିୟରଞ୍ଜନ ବିବାହ କରିବାକୁ ନାହିଁ ନ ଥିବା ଯୌତୁକ ଦାବି କରିଥିଲେ ସେହି ପ୍ରିୟରଞ୍ଜନ ସଖୀନାକୁ ବିବାହ କରିବାକୁ ସମପରିମାଣରେ ଯୌତୁକ ଉହିଁଛନ୍ତି । ସଖୀନା ମଧ୍ୟ ସେଥିପାଇଁ ଦୁଃଖ ନକରି ସମର୍ଥନ କରୁଛି । ଏହା ସତ୍ୟ ଯେ ସେ ପ୍ରିୟରଞ୍ଜନଙ୍କ ଶିକ୍ଷାରେ ପଡ଼ିଛି ।

—ଭଉଜ ।

—କଣ ।

—ଭାବୁଛ ଯେ ।

—ହଁ ।

—କାହାକଥା ।

—ତୁମ ଭାଇଙ୍କ କଥା ନୁହେଁ ।

—ଆଉ ?

—ତୁମ ବର କଥା ।

—ମୋ ବରକୁ ତୁମେ ଚିହ୍ନିଛ ନିଶ୍ଚୟ ?

—ହଁ ।

—ମାନେ ?

—ତାଙ୍କ ସହିତ ମୋର ମଧ୍ୟ ବିବାହ ସ୍ଥିର ହୋଇଥିଲା ।

—ସତେ ନା କଣ !

—ହଁ ।

—ଭାଙ୍ଗିଗଲା କାହିଁକି ?

—ଅଧିକ ଯୌତୁକ ଦାବି କଲେ ।

—ତୁମେ ନିଶ୍ଚୟ ଦୁଃଖ କରିଥିବ ଭଉଜ ।

—ନା ! ବରଂ ଖୁସିହେଲି ଯେ ଗୋଟାଏ ମୂର୍ଖ ବେଇମାନ କବଳରୁ ମୁଁ ରକ୍ଷା ପାଇ ଯାଇଛି ।

—ବେଇମାନ ! କିଏ ?

—ସେ ଏକ ଅକୃତଜ୍ଞ ପଶୁ !

—କାହାକୁ ଏ'କଥା କହୁଛ ?

—ଯାହାର ଜୀବନ ମୁଁ ରକ୍ଷା କରିଥିଲି ।

—ଭଉଜ ! ତୁମେ ପ୍ରିୟରଂଜନଙ୍କ କହୁନାହଁ ତ ?

କୁସୁମୀ କ୍ରୋଧ ଚପି କଥାର ଧାରା ବଦଳାଇ ଦେଲା । ସଖୀନା ଜାଣିଲେ ଦୁଃଖ ପାଇବ । ଅନେକ କିଛି ଭାବିବ । ପ୍ରିୟରଂଜନ ମଧ୍ୟ ଧରାପଡ଼ି ଯିବେ । ସେ ଜାଣିଲେ ବାହାଘର ଭାଙ୍ଗି ଯାଇ ପାରେ ।

ଧର୍ମ ଚାରି ଯୁଗରେ ସତ୍ୟ ।

ଭଗବାନ ଦୋଷୀକୁ ସମୁଚିତ ଶାସ୍ତି ଦେବେ ନିଶ୍ଚୟ ।

ଏତେଟା ବିବ୍ରତ ହେବା ଠିକ୍ ନୁହେଁ ।

ନା ସଖୀନା ନା ।

ମୁଁ ତୁମ ଭାବିସ୍ୱାମୀଙ୍କ କଥା କହୁନାହିଁ । ଜଣେ ଲୋକ ଦୁର୍ଘଟଣାରେ ପଡ଼ିଗଲା ମୁଁ ତାକୁ ବଞ୍ଚାଇଥିଲି । ତାକୁ

ନବଜୀବନ ଦେଇଥିଲି । ବାପା ପ୍ରତିଦାନରେ ତାଙ୍କୁ ଜ୍ୱାଇଁ କରିବା ପାଇଁ ମନସ୍ଥ କରିଥିଲେ । ସେ ଲୋକଟା ପ୍ରଥମେ ରାଜି ହୋଇଥିଲା । ପରେ ଠିକ୍ ପ୍ରିୟରଂଜନଙ୍କ ପରି ଯୌତୁକ ଦେବାକୁ ମୋ ବାପାଙ୍କୁ ମଧ୍ୟ କହିଲା । ବାପା ମନା କରି-ଦେଲେ ।

ସେ ମଧ୍ୟ ନାସ୍ତି ବାଣୀ ଶୁଣାଇଲେ ।

ଭାବିଲେ ଦିନେ ତାଙ୍କ ଜୀବନ ରକ୍ଷା କରିଥିଲା ତା ପ୍ରତି କିଛିଟା କର୍ତ୍ତବ୍ୟ କରିବାର ଥିଲା । ତା ନକରି ସେ ଯୌତୁକ ଉପରେ ଅଧିକ ଗୁରୁତ୍ୱ ଦେଲେ । ତୁମେ କୁହ ସଖୀନା ସେ ଲୋକକୁ ବେଇମାନ ବ୍ୟତୀତ ଆଉ କଣ କୁହାଯିବ ।

ସଖୀନା କହିଲା ସେ ଲୋକଟା ପ୍ରକୃତରେ ଅମଣିଷଟାଏ । ପ୍ରିୟରଂଜନ କିନ୍ତୁ ସେପରି ନୁହଁନ୍ତି । ମୁଁ ତାଙ୍କୁ ଭଲପାଇ ସାରିଛି । । ସେ ମଧ୍ୟ ପସନ୍ଦ କରିଛନ୍ତି ।

—ଭଲ ।

—ଜାଣ ଭଉଜ ପ୍ରିୟରଂଜନ କାଲି ଖଣ୍ଡେ ଚିଠି ଦେଇଛନ୍ତି ।

—ସତେ ।

—କେତେ ବ୍ୟାକୁଳତା ସେ ଚିଠିରେ ପୁରି ରହିଛି । ତୁମେ ପଢିଲେ କାନ୍ଦିବ ।

—ଭାଗ୍ୟବତୀ ତୁମେ ।

—ସବୁ ଭଗବାନଙ୍କର ଦୟା ।

—ସଖୀନା ।

—ଉଁ ।

—ଯୌତୁକ ନ ଦେଇ ବାହାହେଲେ କ୍ଷତି କଣ ?

—ତେବେ କାହିଁକି ତୁମେ ପ୍ରିୟରଞ୍ଜନଙ୍କର ଏହି ବର୍ବ-ରତାକୁ ପସନ୍ଦ କରୁଛ ?

—ମୋ ଦୋଷ କଣ ?

—ସବୁ ଦୋଷ ତୁମର ସଖୀନା । ଯୌତୁକ ଦ୍ୱାରା ଯେଉଁ-ମାନେ ନାରୀର ମୂଲ୍ୟାୟନ କରୁଛନ୍ତି ତାଙ୍କ ସପକ୍ଷରେ ସତ ଦେବା ତୁମ ପକ୍ଷେ ଠିକ୍ ?

—ଭଉଜ !

—ଛି ସଖୀନା ! ତୁମେପରା ପାଠ ପଢିଛ । ସମାଜକୁ ସୁସ୍ଥ ରଖିବା କି ତୁମଦ୍ୱାରା ସମ୍ଭବ ହେବନାହିଁ ।
ସଖୀନା ଡରି ଯାଇଛି ।

ହାରି ଯାଇଛି ।

ମୁହଁରେ ତାର କଥାନାହିଁ ।

ବଣଜଙ୍ଗଲରେ କେଉଁ ଏକ ଅଖ୍ୟାତ ପଲ୍ଲୀରେ ଗଢି-ଉଠିଥିବା ଏହି ବୋହୂ କୁସୁମୀଠାରେ ଏତେ ବୁଦ୍ଧି ସମ୍ଭବ ହୋଇଛି କିପରି ? ଭାଇ ଭାଗ୍ୟବାନ୍ ।

ପତ୍ନୀ ମଧୁମିତା ମରିଗଲା ପରେ ଭାଇ ବିବାହ କରିବା ପାଇଁ ମନା କରି କହିଥିଲେ, ମଧୁମିତା ଭଳି ଗୁଣବତୀ ସ୍ତ୍ରୀଟିଏ ଆଉ ଦେହ ପାଇବେ ନାହିଁ ।

ଭାଗ୍ୟରେ ପରିବର୍ତ୍ତନ ।

ହଁ ତା ନୁହେଁ ତ ଆଉ କଣ ।

ଆଜି କୁସୁମ ଭଉଜ ସମସ୍ତଙ୍କର ପ୍ରିୟଭାଜନ ହୋଇଛନ୍ତି । ବାବା ମା ତାଙ୍କୁ ନିଜ କନ୍ୟାପରି ଗେହ୍ଲା କରିଛନ୍ତି । ଘରର ଦାୟିତ୍ୱ ଦେଇଛନ୍ତି । ମିନା ଆଦର ସ୍ନେହ ପାଇଛି । କୁସୁମ ଭଉଜଙ୍କ ଗୁଣର ତୁଳନା ନାହିଁ । ସେ ଏପରି ଭାଗ୍ୟବତୀ ଯେ ନିଜ ମା'କୁ ଫେରି ପାଇଲେ ।

—ଭଉଜ !

କଣ ।

—ତୁମ ବାବାଙ୍କୁ ଚିହ୍ନି ନାହଁତ । ତାଙ୍କୁ ଫେରି ପାଇବା ପାଇଁ ମନ ହେଉ ନାହିଁ ।

କୁସୁମୀ କାନ୍ଦ ପକାଇଲା ।

ସଖୀନା !

ମୋ ଜୀବନଟା ଗୁଡାଏ ଦୁଃଖରେ ଗଢା । କେଉଁ ଝିଅ ବାପ ମା'ଙ୍କୁ ନ ଚିହ୍ନେ କହିଲ । ମା'କୁ ପାଇଛି ବାପାଙ୍କୁ ଫେରି ପାଇବାର ମୋହ ମୁଁ କେମିତି ତ୍ୟାଗ କରିପାରେ ? ମୁଁ ନିଜେ ଯାଇ ତାଙ୍କୁ ଫେରାଇ ଆଣିବି ।

—ମଣିମାଳା ଦେବୀ ବାଧା ଦେବେ ନାହିଁତ ।

—ନାଁ ସେ ବାଧା ଦେବେ କାହିଁକି । ତଥାପି ମୋର ଆତ୍ମ ବିଶ୍ୱାସ ଅଛି ବାପା ନିଜେ ଦିନେ ମୋ ନିକଟରେ ପହଞ୍ଚିବେ । କାରଣ ସତ୍ୟର ମୃତ୍ୟୁ ନାହିଁ ।

—ଧନ୍ୟବାଦ ।

—ସଖୀନା !

—କଣ ।

—ରାତି ଅଧିକ ହୋଇଛି ।

—ହୁଁ ।

—ଭାଇ କାଲି ଆସିବେ ।

—ହୁଁ ।

—ତୁମ କାନ୍ଦଲା ମୁହଁରେ ହସ ଉକୁଟିବ ନିଶ୍ଚୟ ।

—ଯା !

—ସଖୀନା ହସି ହସି କହିଲା,

ଭାଇ ଆସିବାର ଶୁଣି···
ମନେ ମନେ କେତେ କଳ୍ପନା କରନ୍ତି···
ମୋ ସୁନା ଭଉଜରାଣୀ ।

କାନ୍ତ ଗଲେ ପରବାସେ·····
ସଜ ଯଉବନ ବାହୁନି ମରୁଛି—
ଛାତିରେ ଚ୍ଚନକା ପଶେ ।

ଉଡ଼ଯାଏ ବନପକ୍ଷୀ
କାହିଁ ରହିଗଲେ ଆନ୍ଧ୍ର କଳିଜାହ୍ନ
ପାଗଳିନୀ ହୁଏ ସଖୀ ।

ମେଡେଇ ଚାଲ କୁହୁମୀ ।

ଭାହିଲା ତୁମଦିନ ତ ଆସୁଛି ! ବ୍ୟସ୍ତ କାହିଁକି । ସଖୀନା କୁସୁମୀକୁ ଭିଡଧରି କହିଲା, ସତ କହୁଛି ଭଉଜ—ମତେ କହିଲେ ତୁମକୁ ମୋଟେ କଥା କହିବିନି ।

× × ×

ମଝିରେ ମଝିରେ ମଣିମାଳା ଆସି କୁସୁମୀକୁ ଦେଖି ଯାଆନ୍ତି । ଭଲମନ୍ଦ ବୁଝନ୍ତି । କୁସୁମୀ ମା'କୁ ପାଇ ଆନନ୍ଦ ହୁଏ । ଗୋଟିଏ ସ୍କୁଲରେ ଅନଙ୍ଗ ଓ ମଣିମାଳା ଚାକିରୀ କରିଥିବାରୁ ମଣିମାଳା ଜ୍ୱାଇଁ ଅନଙ୍ଗର ଖବର ଅନ୍ତର ବୁଝନ୍ତି ।

ଛୁଟିରେ ଅନଙ୍ଗ ରହିପାରନ୍ତ ନାହିଁ ।

କୁସୁମୀର ହସ ହସ ଲାଜୁଆ ମୁହଁଟି ତାଙ୍କ ଆଖିରେ ସ୍ୱପ୍ନ ସୃଷ୍ଟି କରେ ।

ଛୁଟି ଆସନ୍ତ ତା ପାଖକୁ ।

କୁସୁମୀ ସ୍ୱାମୀ ଅନଙ୍ଗଙ୍କୁ ଦେବତା ମନେ କରିଥାଏ ତାଙ୍କ ସେବାପୂଜାରେ ଅବହେଳା କରିପାରେ ନାହିଁ । ଯେତେଦିନ ଅନଙ୍ଗ ଘରେ ରହନ୍ତ ତାଙ୍କ ପାଖେ ପାଖେ ରହି ଥାଏ । ଅନଙ୍ଗ କୁସୁମୀକୁ ସ୍ତ୍ରୀ ଭାବରେ ପାଇଥିବାରୁ ନିଜକୁ ଭାଗ୍ୟବାନ ମନେ କରନ୍ତ ।

ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟ ରହିଛି ବିଶ୍ୱାସ ପ୍ରେମ-ସ୍ନେହ ଓ ସତ୍ୟ ଜୀବନର ଜଞ୍ଜାଳ ବହନ କରି ମଧ୍ୟ ଯେଉଁମାନେ ହସି ହସି ସମୟକୁ ଉପଭୋଗ କରନ୍ତ ସେହିମାନେହିଁ ପ୍ରକୃତରେ ସୁଖୀ !

ରାତି ଏଗାରଟା । ଅନଙ୍ଗ ବାହାରେ କାର୍ଯ୍ୟବ୍ୟସ୍ତ ଅଛନ୍ତି । ଆଉମାତ୍ର ପାଞ୍ଚଟା ଦିନ ରହିଲା ସଖୀନାର ବାହାଘର । ପ୍ରିୟ-ରଞ୍ଜନ ମହାପାତ୍ରଙ୍କ ସହିତ ତାର ପରିଣୟ ହେବ । ଅନଙ୍ଗ ଆୟୋଜନରେ ଲାଗିଛନ୍ତି । ମଣିମାଳା ଓ ହରମୋହିନୀ କାମ-ରେ ବ୍ୟସ୍ତ ଅଛନ୍ତି ।

କୁସୁମୀ ଶାଶୁ-ଶ୍ୱଶୁରଙ୍କ ପଦସେବା କରି ଉପର ମହଲାରୁ ଫେରି ଆସିଲାବେଳେ ଦେଖିଲା ସଖୀନା ତା ରୁମ୍‌ରେ ବସି କ'ଣ ଗୋଟାଏ ବହି ପଢୁଛି । ସେ ଏକପ୍ରକାର ବାୟାଣୀ ହୋଇ ଯାଇଛି ପ୍ରିୟରଞ୍ଜନଙ୍କୁ ପାଇବାକୁ । ଚୁପ୍‌ଚାପ୍ ପାହାଚ ଡେଇଁ ନିଜ କୋଠରୀକୁ ଫେରି ଆସିଲା କୁସୁମୀ ।

ଏ ପର୍ଯ୍ୟନ୍ତ ସ୍ୱାମୀ ବାହାରଘରୁ ଫେରି ନାହାନ୍ତି । କେତେ ଜଣ ଶ୍ରମିକଙ୍କୁ ଧରି କାମ କରାଉଥିଲେ ଅନଙ୍ଗ । ମନେ ମନେ ବିରକ୍ତ ହୋଇ କୁସୁମୀ କହିଲା, ଏ ପର୍ଯ୍ୟନ୍ତ ଦେଖା ନାହାନ୍ତି ଯେ । ଏତେ ଦିନପରେ ଘରକୁ ଫେରିଲେ ଅଥଚ ରାତି ବାରଟା ବାଜିଲାଣି···ଦେଖାନାହିଁ । ଆଜି ଆସନ୍ତୁ, ଅଭିମାନରେ ଫୁଲି ଉଠିଥିଲା ଚନ୍ଦ୍ରମା ମୁହଁଟି କୁସୁମୀର ।

ଫେରି ଆସିଛନ୍ତି ଅନଙ୍ଗ ଦାସ ।

ଦରଜା ଠେଲି ଭିତରକୁ ପଶି ଆସୁଛନ୍ତି । ମୁହଁ ଫୁଲାଇ ବସିଛି ଶଶୀହାସି କୁସୁମୀ । ସ୍ୱାମୀଙ୍କ ବିଳମ୍ବ ପାଇଁ କ୍ଷୁବ୍‌ଧ ମନ ତାର ।

ହସିଲେ ଅନଙ୍ଗ ।

କହିଲେ, ଆଜି ଖୁବ୍ ସୁନ୍ଦର ଦେଖାଯାଉଛ କୁସୁମ ! ଯେପରି ଅମରାବତୀ ତ୍ୟାଗକରି ରୂପସୀ ମେନକା ମର୍ତ୍ତ୍ୟକୁ ଓହ୍ଲାଇ ଆସିଅଛି ।

ନୀରବ ରହିଲା ପ୍ରେମଶିଳା ନବବଧୂ କୁସୁମୀ ।

—କୁସୁମ ।

—"— — —"

—କଥା କହିବନି ।

—ଜାଣେ ତୁମେ ରାଗିଛ । ଜାଣିଛତ, ସଖୀନାର ବିବାହ ମାତ୍ର କେତେଟା ଦିନ ରହିଲା । ଆଜିଠାରୁ ପ୍ରସ୍ତୁତ ନ ହେଲେ କାମ ସରିବ ନାହିଁ ।

—କିଏ କହୁଥିଲା ଯେ ଏତେ ଶୀଘ୍ର ଆସିବାକୁ

—କୁସୁମୀ !

—ନା ।

—ମୋ କଥା –

—ଅନ୍ୟ କାହାକୁ କୁହ ।

—ତୁମେତ ମୋର ଏକମାତ୍ର ମନର ମଣିଷ ।

—ନା ।

—କ୍ଷମା ଦେବନି !

କୁସୁମୀ ଅନଙ୍ଗଙ୍କ ହାତଧରି ପକାଇ କହିଲା ଏମିତି କଣ କହୁଛମ ! ମୁଁ କହିଲି କ୍ଷମା ମାଗିବାକୁ !

—ନା ।

—ସ୍ତ୍ରୀ ମୁଁ । ସେବାରେ ଦାସୀ, ସ୍ନେହଦାନରେ ଭଗିନୀ ଏବଂ ପ୍ରେମଦାନରେ ପତ୍ନୀ ମୁଁ ତୁମର ।

—ବୁଝିଲି ।

—କିଛି ବୁଝିନାହଁ ।

—ତୁମେ ।

—ମୁଁ ବୁଝିଛି ।

—କଣ ?

ତୁମେ ମତେ ଭଲ ପାଇ ନାହଁ ।

ଅନଙ୍ଗ ବାବୁ କୁସୁମିକୁ ନିଜ ଅଡକୁ ଆଉଜାଇ ନେଇ କହିଲେ, ଏଥର ଅଭିମାନ ତ୍ୟାଗକର ମାନିନୀ ! କିଞ୍ଚିତ ହସନା !

ଉଃ ! ଛାଡନା ।

—ଛାଡିବି କାହିଁକି ! ଏମିତି ଧରିଥିବି ଯୁଗଯୁଗ ପାଇଁ ।

—ସ୍ୱାମୀ !

...କୁସୁମ ! ତୁମେ ମୋର କଳ୍ପନାକୁ ରସରଙ୍ଗ ଏବଂ ଛନ୍ଦଟିରେ ସଜାଇ ଦେଇଛ । ତୁମକୁ ବିବାହ କଲ୍, ପରେ ଏ ପରିବାର ସତେଜ ହୋଇ ଉଠିଛି । ସବୁରି ମୁହଁରେ ତୁମରି ପ୍ରଶଂସା । ତୁମରି ନାମ ।

ବେଳେ ବେଳେ ଭାବେ ଚାକିରୀ ଛାଡଦେଇ ତୁମରି ପାଖେ ପାଖେ ରହନ୍ତି । ଦେଖୁଥାନ୍ତି ତୁମକୁ ।

କିନ୍ତୁ ଟାକ୍‌ରନା !

—ଚାକିରୀ କରିବା କଣ ଦରକାର ! ଯଥେଷ୍ଟ ସମ୍ପତ୍ତି ରହିଛି । ବାବା ମଧ୍ୟ ଜଣେ ବ୍ୟବସାୟୀ । ତୁମକୁ ଛାଡ଼ ମୁଁ ମଧ୍ୟ ବହୁ ଦୁଃଖରେ ଦିନ କାଟୁଛି । କିଛି ଭଲ ଲାଗୁନାହିଁ । ମନ ହେଉଛି ମୋର ଯେପରି ମୃତ୍ୟୁ ହୋଇ ଯାଇଛି ।

—କୁସୁମୀ !

—ଚାକିରୀ ଛାଡ଼ଦିଅ । ବାବାଙ୍କ ସହିତ କାମକର । ତୁମରି ପୋଷ୍ଟରେ ଅନ୍ୟଜଣେ ବେକାର ନିଯୁକ୍ତି ପାଇଯିବ ତ ।

—କୁସୁମୀ !

ଆମର ଯେତିକି ଅଛି କମ୍ ନୁହେଁ । ବାବାଙ୍କର ବୟସ ହେଲାଣି । ଚାକିରୀ ନକରି ବ୍ୟବସାୟ କଲେତ ମନ୍ଦ ଆୟ ହେବ ନାହିଁ । ଭାଇ ବାହାରେ ରହୁଛନ୍ତି ତୁମେ ଘରେ ରୁହ ।

—ଠିକ୍ ଅଛି । ଅଧିକ ଆଶାରେ ଘରଠାରୁ ଦୂରରେ ରହିବା ଉଚିତ ନୁହେଁ । ବରଂ ବାବାଙ୍କୁ ସାହାଯ୍ୟ କଲେ ସେ ବିଶ୍ରାମ କରି ପାରିବେ ।

—ହୁଁ ଏତେଦିନ ପରେ ବୁଦ୍ଧି ଦେଲି···ନା ।

—ହସିହସି କହିଲା କୁସୁମୀ । ଅନଙ୍ଗ ତାକୁ ଆଉଟିକେ ପାଖକୁ ଟାଣିନେଲେ । କହିଲେ ରତି ଛୋଟାଏ ଶୋଇପଡ଼ନା ।

—ଏଁ, ହୁଁ ।

—ବସି ରହିବ ଏମିତି ସାରାରାତି !

—ବସି ରହିବି କାହିଁକି ; ଶୋଇବି ।

ଆଲିଙ୍ଗନ ପୂର୍ବକ ଅନଙ୍ଗ କହିଲେ ଚୁପି ଚୁପି ଅନେକ କଥା । କୁସୁମୀ ଓଠଚିପି ହସୁଥିଲା ଏକ ନୂଆ ଠାଣିରେ ।

—ଓଃ—ଝରକାଟା ଖୋଲା ଅଛି ଯେ !

—ଥାଉ !

—ନାଇଁ ନାଇଁ ବନ୍ଦ କରିଦିଅ ।

—କୁସୁମ !

—ଉଁ ।

—ଦେଖୁଛ ?

—ହଁ ।

—କଣ ଦେଖୁଛ ?

—ଜହ୍ନ ଖେଳୁଛି ମେଘ ସହିତ ।

—ତୁମେ—

—ଖେଳୁଛି ତୁମ ସହିତ ।

—ତୁମେ ମୋର ଜହ୍ନ ।

—ତୁମ ମନ ଆକାଶରେ ।

—ଜୀବନ ଆକାଶର ମଧ୍ୟ ।

—ତୁମେ ଆରେ ଏ କଣ ହେଉଛି, ଛୁହନା !

—ଅନଂଗ ଖୁବ୍ ଆସ୍ତେ କହିଲେ ନା—ନା !

—କୁସୁମୀ ଲାଇଟ୍ ଅଫ୍ କରିଦେଇ ଲମ୍ବା ନିଃଶ୍ୱାସ ଛାଡଥିଲା ।

—ଶେଷ ।

...ଆଜି ସଖୀନାର ବିବାହ ।

ସମସ୍ତେ କାର୍ଯ୍ୟବ୍ୟସ୍ତ । ଆଜି ତର୍ ନାହିଁ କୁସୁମୀକୁ ।ସବୁରି ମୁହଁରେ ତା ନାମ ରହିଛି । ଶାଶୁ ଶ୍ୱଶୁର ଏବଂ ଅନ୍ୟମାନେ

ତା ହାତକୁ ପରାମର୍ଶ ଏବଂ ଆଦେଶକୁ ପାଳନ କରିବାକୁ ବାଧ୍ୟ ହୋଇଛନ୍ତି । ଜଣାଯାଉ ନାହିଁ ଅଳ୍ପ କେତେମାସ ତଳେ କୁସୁମୀ ଏ ଘରକୁ ବୋହୂହୋଇ ଆସିଥିଲେ ମଧ୍ୟ ସମସ୍ତେ ମାନିନେଉଛନ୍ତି । ମଣିମାଳା ଝିଅର ଘରକରଣାରେ ଏତେ ମୁଗ୍ଧ ଯେ ଭାଷାରେ ପ୍ରକାଶ କରିହେବ ନାହିଁ । ସେ ତାଙ୍କୁ କଥାଦେଇ କହିଛି, ତୁ କାନ୍ଦନା ମା' ଦିନେନା ଦିନେ ମୁଁ ବାପାଙ୍କୁ ଫେରାଇ ଆଣିବି ।

ବିବାହ ବେଦି ଚମତ୍କାର ଭାବରେ ପ୍ରସ୍ତୁତ ହୋଇଛି । ଅତିଥିମାନଙ୍କ ପାଇଁ ସବୁ ପ୍ରକାର ବ୍ୟବସ୍ଥା କରାଯାଇଛି । ବେଦୀଠାରୁ କିଛିଦୂରରେ ଗୋଟାଏ ବଡ଼ ଧରଣର ଦଣ୍ଡି (ତୌଲ୍ ଦଣ୍ଡି) ଟଙ୍ଗା ଯାଇଥିଲା । ସେଠାରେ କେତୋଟି ଟ୍ରଙ୍କ୍ ରହିଥିଲା ।

ସମସ୍ତଙ୍କର ଗୋଟିଏ ପ୍ରଶ୍ନଥିଲା ବେଦୀ ପାଖରେ 'ଏ' ଦଣ୍ଡି ରହିଛି କାହିଁକି ? ଟ୍ରଙ୍କ୍ ରହିଛି କାହିଁକି ?

କେହି ଯଥାର୍ଥ ଉତ୍ତର ଦେଇ ପାରି ନ ଥିଲେ ।

'ଏ' ବ୍ୟବସ୍ଥା ଥିଲା କୁସୁମୀର ।

ଗତି ବଢି ଯାଉଥିଲା ଧୀରେ ଧୀରେ । ବିବ୍ରତ ମନରେ ଅନଙ୍ଗବାବୁ କାମକରି ଚାଲିଥିଲେ । ବେଳେବେଳେ କୁସୁମୀ ସହିତ ଚୁପ୍‌ଚାପ୍ କଥାବାର୍ତ୍ତା ହେଉଥିଲେ । ନିରୁତ୍ସାହରେ କାତରପୂର୍ଣ୍ଣ ନୟନରେ ସୁନ୍ଦରୀ କୁସୁମୀକୁ ଅନାଇ ରହୁଥିଲେ । କୁସୁମୀ ତାଙ୍କୁ ସାହସ ଦେଇ କହୁଥିଲା ତୁମେ ବ୍ୟସ୍ତ ହେଉଛ

କାହିଁକି ! ଯାହା କରିବି ମୁଁ । ଦେଖିବ କିଛି ଅସୁବିଧା ହେବ ନାହିଁ । ପ୍ରିୟରଞ୍ଜନଙ୍କୁ ସମୁଚିତ ଶାସ୍ତି ଦେବି । ଏହାଦ୍ୱାରା ସଖୀ ନାର କୌଣସି ଅସୁବିଧା ହେବନାହିଁ । ସମୟ ଉପସ୍ଥିତ ହେଲା ଘଡି ଗୋଟାଏ ବାଜିଲା ।

ବରବେଶରେ ପହଞ୍ଚିଲେ ପ୍ରିୟରଞ୍ଜନ ମହାପାତ୍ର ।

ତାଙ୍କ ସହିତ ଥିଲେ ତାଙ୍କ ଲୋଭୀପିତା ଓ ଶତାଧିକ ବନ୍ଧୁ ଓ ବାନ୍ଧବୀ ! ଏମାନଙ୍କ ମଧ୍ୟରେ ଅନେକ ହେଉଛନ୍ତି ଅବିବାହିତା । ପ୍ରଚୁର ଯୌତୁକ ଲୋଭରେ ପ୍ରିୟରଞ୍ଜନଙ୍କ ବାପ ସୁବ୍ରତ ମହାପାତ୍ର ଫୁଲି ଉଠୁଥିଲେ ।

ପଚାଶ ହଜାର ଟଙ୍କା !

ମୋଟର ବାଇକ୍ ।

ଡନ୍‌ଲପ ଗଦି ।

ଟେଲିଭିଜନ ।

ଟେପ୍‌ରେକର୍ଡର ।

ରେଫିରିଜେଟର ।

ପଲଙ୍କ । ଆଇରନ୍ ଚେଷ୍ଟ ।

ଟେବୁଲ ଚୌକି ଓ ବହୁ ସଂଖ୍ୟାର ବାସନ ।

ସୁବ୍ରତ ମହାପାତ୍ର ତନ୍ମୟ ହୋଇ ଯାଉଥିଲେ । ଉନ୍ମାଦପରି ଏଣେତେଣେ ଘୁରୁଥିଲେ ଯୌତୁକ ପାଇଁ ରଖାଯାଇଥିବା ସାମଗ୍ରୀଗୁଡିକୁ ।

ଏସବୁ ନେଇ ତାଙ୍କ ଝିଅର ବାହାଘର କରାଇବେ ।

ଜ୍ୱାଇଁଙ୍କୁ ଦେଇ ନିଜ ସନ୍‌ମାନ ବଢ଼ାଇଦେବେ ।
ଲୋକେ ତାଙ୍କୁ ଧନ୍ୟ ଧନ୍ୟ କହିବେ ।
ବରଯାତ୍ରୀମାନଙ୍କ ଚର୍ଚ୍ଚା ସରିଗଲା ।

ଅତିଥିମାନଙ୍କୁ ମିଷ୍ଟାନ୍ନ ଦ୍ୱାରା ସନ୍ତୁଷ୍ଟ କରାଗଲା । ବିବାହ ପର୍ବ ଆରମ୍ଭ ହେଲା ।

କୁନ୍ଦମୀ ଓ ଅନଙ୍ଗ ବିବାହ କାର୍ଯ୍ୟ ପରିଚାଳନା କରୁଥିଲେ ।

ହରମୋହିନୀ ଦେବୀ ଓ ମଣିମାଳା ଘର ଭିତରେ ଥାଇ କାର୍ଯ୍ୟ କରୁଥିଲେ । ଅନଙ୍ଗଙ୍କ ପିତା ଚୁପ୍ ଚାପ୍ ବସି ରହିଥିଲେ ବେଦି ଉପରେ । କନ୍ୟା ସଂପ୍ରଦାନ କଲାବେଳେ ସେ ବେଶ୍ ଗମ୍ଭୀର ଥିଲେ । ସତେ ଯେପରି ନିକଟରେ ଘଟିବାକୁ ଥିବା ଏକ ବିରାଟ ଦୁର୍ଘଟଣାର ଦୃଶ୍ୟ ସେ ଦେଖିପାରୁଛନ୍ତି । କଣ ସେ ଦୁର୍ଘଟଣା ? ?

ସଖୀନା ସହିତ ପ୍ରିୟରଞ୍ଜନଙ୍କ ବିବାହ ଶେଷ ପର୍ଯ୍ୟାୟରେ ପହଞ୍ଚିଲା ।

ପ୍ରିୟରଞ୍ଜନଙ୍କ ପିତା ସୁବ୍ରତ ମହାପାତ୍ର କହିଲେ, ଆଉ ବିଳମ୍ବ କାହିଁକି । ଯୌତୁକ ବାବଦ ସାମଗ୍ରୀ ଓ ଟଙ୍କାଦେବାର ବ୍ୟବସ୍ଥା କରାଯାଉ । ଝିଅ ଜ୍ୱାଇଁ ଯେ ବେଦୀ ଉପରେ ବସି ରହିଲେ ।

ଏତିକିବେଳେ ଜଣେ ମହିଳା ହାତେ ଓଢ଼ଣା ଟାଣି ବେଦି ନିକଟରେ ଉପସ୍ଥିତ ହେଲା । ସମସ୍ତଙ୍କ ଆଖି ଅଟକିଗଲା ତା ଉପରେ । ସେ ଆଉ କେହିନୁହେଁ, ଅନଙ୍ଗଙ୍କ ଅଙ୍କର ଲକ୍ଷ୍ମୀ—

କୁସୁମ କୁମାରୀ ଦାସ ।

ସେ କହିଲା, ମୁଁ ଏ'ଘରର ବୋହୂ ହିସାବରେ ଯୌତୁକ ଦେବାର ଅଧିକାର ପାଇଅଛି ।

ନିକଟରେ ଦର୍ଣ୍ଣି ତରାଜୁ ରହିଛି । ପ୍ରିୟରଞ୍ଜନଙ୍କୁ ଓଜନ କରାଯିବ । ସେ ଯେତେ କିଲୋ ହେବେ ତାଙ୍କୁ ସେତିକି ହଜାର ଟଙ୍କା ଦିଆଯିବ ।

ହଠାତ୍ ସମସ୍ତେ ସ୍ତବ୍ଧ ହୋଇଗଲେ !

ଘଣୀନା ମୁଣ୍ଡରୁ ଓଢ଼ଣା ଖସିଗଲା ।

ପ୍ରିୟରଞ୍ଜନ ଥରିଉଠିଲେ । ଏହି ଗୁଣବନ୍ତଙ୍କ ଅଯୋଗ୍ୟ ଲୋଭୀ ବାପ-ରାଗରେ ଫାଟିଉଠିଲେ । ତିଳେମାତ୍ର ବିଚଳିତ ନ ହୋଇ କୁସୁମୀ କହିଲା ଏଥିରେ ରାଗ କ୍ରୋଧ ମାନ ଅଭିମାନ ବା ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ଦୟାକରି ବରପାତ୍ର ମହାଶୟ ଦର୍ଣ୍ଣିତରାଜୁ ଉପରକୁ ଆସନ୍ତୁ । ମୁଁ ତାଙ୍କରି ଓଜନ ଟଙ୍କା ଦେବାକୁ ପ୍ରସ୍ତୁତ ରହିଛି । ଦେଖୁଛନ୍ତ କେତେଟା ଟଙ୍କା ଉର୍ତ୍ତି ଟ୍ରଙ୍କ ରହିଛି ।

ସୁବ୍ରତ ବାବୁ ବିଶ୍ୱାସ କରିପାରିଲେ ନାହିଁ । ସତେ କି ପ୍ରିୟରଞ୍ଜନର ସଠିକ୍ ଓଜନରଟଙ୍କା ଦେବାକୁ ଏମାନେ ପ୍ରସ୍ତୁତ ଅଛନ୍ତି । ଯଦି ସତ୍ୟ ତେବେ ଯଥେଷ୍ଟ ଲାଭହେବ । ତୁ ଉଠିଯା ପ୍ରିୟରଞ୍ଜନ । ତରାଜୁରେ ବସ । ଧନଲୋଭୀ ରାକ୍ଷସ ବାପାଙ୍କ ଆଦେଶ ପାଇବା ମାତ୍ରେ ଯୋଗ୍ୟନନ୍ଦନ ପ୍ରିୟରଞ୍ଜନ ସଙ୍ଗେ ସଙ୍ଗେ ତରାଜୁର ଗୋଟିଏ ପଟରେ ଲଥ୍‌କରି ବସି ପଡ଼ିଲେ ।

ବଟକର ଦ୍ୱାରା ପ୍ରିୟରଞ୍ଜନଙ୍କୁ ଓଜନ କରିଦେଲା । ତାଙ୍କ ଓଜନ ହେଲା ପଚାଶ କିଲୋ । ଉପସ୍ଥିତ ଲୋକମାନେ ନିରବ-ରେ ଏହି ଅଭିନବ ଦୃଶ୍ୟ ଦେଖି ଅବାକ୍ ହୋଇ ଯାଇଛନ୍ତି । ମୀଖୀନା କାନ୍ଦୁଛି ।

ଅନଙ୍ଗଦାସ ଭୟରେ କେତେ କଣ ଭାବୁଛନ୍ତି ।

ତାଙ୍କ ବାପା ମା ଏବଂ ବନ୍ଧୁମାନେ ଆତଙ୍କରେ ପଡ଼ିଛନ୍ତି ।

ମଣିମାଳା ହସୁଛନ୍ତି କନ୍ୟାର କୌଶଳ ଦେଖି ।

କୁସୁମୀ ପ୍ରିୟରଞ୍ଜନଙ୍କ ବାପାଙ୍କୁ କହିଲା, ବୁଝିଲେ ମହାଶୟ !

ଆପଣଙ୍କର ଗୁଣବନ୍ତ ପୁଅଙ୍କ ଓଜନ ହେଲା ପଚାଶକିଲୋ ।

ବଜାରରେ ଛେଳିମାଂସ କିଲୋ ହେଲା ପନ୍ଦର ଟଙ୍କା ।

ଛେଳିମାଂସ ସୁମିଷ୍ଟ ଓ ରୁଚିକର ଏବଂ ଚାହିଦା ରହିଛି ।

ମଣିଷ ମାଂସ ତ ଖିଆ ଯାଏନା ।

ତଥାପି କୁହନ୍ତୁ ଆପଣଙ୍କ ପୁଅର ମାଂସ କିଲୋ କେତେ ହେବ ? •ପୁଅ ତ ଜନ୍ମ କରିଛନ୍ତି•••ଆଉ କାହିଁକି କୁହନ୍ତୁ ? ସୁବ୍ରତ ବାବୁ ରାଗରେ ଗର୍ଜିଉଠିଲେ !

—ସଟ୍ ଅପ୍ ! ମୋ ସହିତ ଥଟ୍ଟା । ମୁଁ ପୁଅକୁ ନେଇ ଚାଲି ଯିବି । ଏ ବାହାଘର ହୋଇ ପାରେନା ମତେ ଅପମାନ ଆସେ

କୁସୁମୀ କହିଲା ରାଗୁଛନ୍ତି କାହିଁକି ମହାଶୟ । ପୁଅର ବାପ ଆପଣ । ଝିଅ ବାପର ମୁଣ୍ଡଟା ଆପଣଙ୍କ ଗୋଡ଼ତଳେ ରହିଛି । ଆପଣଙ୍କର ଗୌରବ କମ୍ ନୁହେଁ । ଦେଖନ୍ତୁ ମୁଁ ଯାହା କହୁଛି

କରୁଛି କି ନାହିଁ । କୁହନ୍ତୁ ପ୍ରିୟରଂଜନ ଆପଣଙ୍କ ମାଂସ କିଲୋ କେତେ ? ମନେରଖନ୍ତୁ ଛେଳିମାଂସ ଦର ଯାହା ମୁଁ ତାର ଅଧା ଦେବାକୁ ସନ୍ମତ ହୋଇପାରିବି ! ଏହାର ଅର୍ଥ ଏହି ଯେ ତୁମମାଂସ କିଲୋ ପିଛା ସାତଟଙ୍କା ଦରରେ ପଇଁତିରିଶ ଟଙ୍କା ! ମାନେ ଗୋଟାଏ ପେୟାର ଚପଲର ମୂଲ୍ୟ ।

ଗର୍ଜିଉଠିଲେ ପ୍ରିୟରଂଜନ ।

ସଖୀନା ମଧ୍ୟ ବାଦ୍ ଗଲାନାହିଁ ।

ସୁବ୍ରତବାବୁ ଚୌକି ଛାଡ଼ ଉଠିଲେ, କୁସୁମୀ କହିଲା ମୋଟେ ଚିତ୍କାର କରନ୍ତୁନାହିଁ ମହାଶୟ । କାରଣ ପୋଲିସ ଅଫିସର ତରୁଣକାନ୍ତ ବହିଦାର ଏବଂ ତାଙ୍କ ଦଳ ଏଇ ସ୍ଥାନରେ ଅଛନ୍ତି । ହୁଏତ ହାତରେ ଲୁହାର ଖଡୁପିନ୍ଧି ମାମୁଁ ଘରକୁ ଯାଇପାରନ୍ତି । ଯୌତୁକ ନେବପରା ମୋର କେତେଟା କଟୁ କଥା ନ ଶୁଣିବ କେମିତି । ଟଙ୍କାଟା କଣ ମୋଫତରେ ଧରା ଦେବ ? ସୁବ୍ରତବାବୁ ଓ ପ୍ରିୟରଂଜନ ହତାଶ ହେଲେ । ପୋଲିସ ଅଫିସର ତରୁଣକାନ୍ତ ବାବୁ ଏହିଠାରେ ଆତ୍ମଗୋପନ କରିଛନ୍ତି ।

ଆଶ୍ଚର୍ଯ୍ୟ !

କିଏ ଏହି ବୋହୂଟା !

ଏତେ କଠୋର କଣ୍ଠତାର ! ମାଡ଼ ଉପରେ କୋରଡ଼ା ଦେଉଛି ! ତେବେ କଣ ଏହିଠାରୁ ପଥରଘରେ ଘଣା ପେଲିବାକୁ ଯିବାକୁ ହେବ ।

ପ୍ରିୟରଂଜନ କୁସୁମୀକୁ ଚିହ୍ନିପାରି ନାହାନ୍ତି । କଣ୍ଠସ୍ୱର ମନେ ପଡ଼ୁଛି । କିନ୍ତୁ ମୁହଁ ଦେଖି ହେଉନାହିଁ ।

ସେ ଚଉକିରୁ ଉଠିଆସି କହିଲେ, ଚାଲନ୍ତୁ ବାବା ! ଆମେ ଏହିକ୍ଷଣି ଏଠାରୁ ଚାଲିଯିବା । ଆଉ ଗୋଟାଏ ନିମିଟ୍ ନୁହେଁ । ସଖୀନା ସହ ମୋର ବାହାଘର ଶେଷ ହୋଇଯାଇଛି । ଆଉ କାମ କଣ ! ଉଠନ୍ତୁ ।

ସଖୀନା କାନ୍ଦିବାକୁ ଲାଗିଲା ।

କୁସୁମୀ କହିଲା, ଚାଲିଯିବ କୁଆଡେ ପ୍ରିୟରଂଜନ ! ତୁମକୁ ବାପ ଜନ୍ମ ଦେଇଛନ୍ତି । ପାଠପଢ଼ାଇ ଯୋଗ୍ୟ କରାଇଛନ୍ତି । ଖାଇବାକୁ ପିନ୍ଧିବାକୁ ଦେଇ ପିଲାଦିନରୁ ପାଳିଛନ୍ତି, ମାନେ ତୁମ ଜନ୍ମଠାରୁ ଆଜି ପର୍ଯ୍ୟନ୍ତ ଯେତେଟଙ୍କା ତୁମପାଇଁ ସେ ଖର୍ଚ୍ଚ କରି ଛନ୍ତି ଆମରିଠାରୁ ଆଦାୟ୍ ନକରି ଚାଲିଯିବ କିପରି । ଅପେକ୍ଷା କର । ତୁମ ମୂଲ୍ୟଟା ନ ନେଇ ଚାଲିଯିବ କିପରି ?

କେହି କିଛି କହିପାରୁ ନଥିଲେ । ଫୁଲରାଣୀ ଓ ଗୌରାଙ୍ଗଆ ଉପସ୍ଥିତ ଥିଲେ । ପ୍ରିୟରଂଜନ ଓ ସୁବ୍ରତବାବୁଙ୍କ ସମେତ ଅନ୍ୟମାନେ ମୁହଁ ତଳକୁ କରି ବସିଛନ୍ତି । ଏହାତ ଅପମାନ ନୁହେଁ, ନର୍କ ଯନ୍ତ୍ରଣା କହିଲେ ଚଳେ । ବେଳକୁବେଳ କୁସୁମୀର ବାକ୍ୟବାଣ ଅଧିକ ଦୁଃଖରେ ପକାଉଥିଲା ସେମାନଙ୍କୁ । ସେ ଏଥର କହିଲା, "ବାହା ବଜାରେ, ଜ୍ୱାଇଁ କିଲୋ ହଜାରେ" ପ୍ରିୟରଂଜନଂକ ଓଜନ ପଚାଶ କିଲୋଗ୍ରାମ ହୋଇଛି । ତାଂକ କିଲୋ ହଜାରେ ହେଲେ ମୋଟ ମୂଲ୍ୟ ପଚାଶ ହଜାର ଟଂକା

ହେଉଛି । ଏହିନିଅନ୍ତୁ ବରପିତା ମହାଶୟ—ଏ ଆଟଚିଟାରେ ପଞ୍ଚଶହଜାର ଟଙ୍କାଅଛି । ଅପମାନ. ଓ ଲଜ୍ୟାରେ ଏବଂ ଲୋକ ନିନ୍ଦାରେ ସୁବ୍ରତବାବୁ ଶବପରି ନିସ୍ତେଜ ହୋଇଯାଇଥିଲେ । ସେ କିଛି ଜବାବ୍ ଦେଇପାରୁ ନଥିଲେ । କୁସୁମୀ କହିଲା, ବୁଝିଲେ ଆଜ୍ଞା ! ପୁଅର ବାପ ମଧ୍ୟ ଝିଅକୁ ଯୋଗ୍ୟକରି ଗଢିଥାନ୍ତି ଅର୍ଥର ଶ୍ରାଦ୍ଧକରି । ଆପଣଙ୍କ ପରି ଯୌତୁକ.. ଲୋଭୀ. ରାକ୍ଷସମାନଙ୍କ ପାଇଁ ମାଆର ଜାତି ଆଜି ଅବହେଳାରେ ନିଜକୁ ହେୟ ମନେ କରୁଛନ୍ତି ।

ମନେ ଅଛି ପ୍ରିୟରଞ୍ଜନ ?

ଦିନେ ତୁମର ଜୀବନ ଯେଉଁ ଝିଅ ରକ୍ଷା କରିଥିଲା ତୁମେ ତାକୁ ଯୌତୁକ ଦ୍ୱାରା ମୂଲ୍ୟାଙ୍କନ କରିଥିଲ ।

ମୁଁ ସେହି କୁସୁମ । ଠାକୁର ଗୌଣ୍ଟଆଙ୍କର ପାଳିତା କନ୍ୟା ମିଷ୍ଟ୍ରେସ ମଣିମାଳାଙ୍କ କନ୍ୟା । ଅନଙ୍ଗ ଦାସଙ୍କ ଧର୍ମପତ୍ନୀ । କୁହ ପ୍ରିୟରଞ୍ଜନ ସଖୀନାଠାରୁ ଏହି ଯୌତୁକର ମୂଲ୍ୟ କମ୍ ନା ଅଧିକ ?

—କୁସୁମ ଦେବୀ....

—ମୁଁ ଏକ ନାରୀ ! ସୃଷ୍ଟିର ମଙ୍ଗଳ ପାଇଁ ମୋର ଜନ୍ମ । ମୁଁ ବିଭିନ୍ନ ରୂପରେ ପୁରୁଷର ମଙ୍ଗଳ କରିଥାଏ । ମୁଁ ଜନନୀ ଭଗିନୀ, ଜାୟା, କନ୍ୟା ଏବଂ ବନ୍ଧୁବର ।

ପ୍ରିୟରଞ୍ଜନ !

ଆଜିର ସମାଜକୁ ତୁମ୍ଭେମାନେ ରୋଗାକ୍ରାନ୍ତ କରନା ।

ନାରୀ ଜାତିକୁ ସନ୍ମାନ ଦିଅ ।

ମାତୃ ଜାତିର ଅବମାନନା କରନା ।

ସୃଷ୍ଟିର ଧ୍ୱଂସ ସାଧନ କରନା ।

ଯୌତୁକ ଲୋଭରେ ସମାଜଠାରୁ ଘୃଣା ହାସଲ କରନା । ମନେରଖ ପ୍ରିୟରଞ୍ଜନ, ଏ ବିଶ୍ୱରେ ଯେତେ ରତ୍ନ ଅଛି ତା' ମଧ୍ୟରେ ଶ୍ରେଷ୍ଠ ରତ୍ନ ହେଉଛି—ନାରୀ ।

ବିବାହ ଏକ ସାମାଜିକ ଓ ମାଙ୍ଗଳିକ କାର୍ଯ୍ୟ ।

ଦାମ୍ପତ୍ୟ ଜୀବନରେ ପ୍ରେମ ସୃଷ୍ଟି କର ।

ଯୌତୁକ ଲୋଭରେ ନିଜକୁ ତଥା ସମାଜକୁ ଧ୍ୱଂସ ପଥକୁ ଟାଣି ନିଅନା । କନ୍ୟାପିତାର ଶକ୍ତିକୁ ଚାହିଁ ଯାହା ଉପହାର ଦେଉଛି ସାଦରେ ଗ୍ରହଣ କର । ଧନ ନ ଚାହିଁ ମନଟିଏ ଚାହାଁ। ସଂପଦ ନ ମାଗି ଆଶୀର୍ବାଦ ମାଗିନିଅ । ତୁମେ ସୁଖୀ ହେବ । ପ୍ରିୟରଞ୍ଜନ । ଝିଅର ବାପକୁ ଥାଳ ଧରାଇ ତା ଆଖିରୁ ଲୁହ ଝରାଇ ତୁମେ ଏବଂ ତୁମପରି ଶିକ୍ଷିତ ଯୁବକମାନେ କେବେ ସୁଖ ପାଇ ପାରିବ ନାହିଁ । ଗୋଟାଏ ପରମାଣୁ ଅସ୍ତ୍ରଠାରୁ ଟୋପାଏ ଆଖି ଲୁହ ଆହୁରି ମାରିତ୍ମକ । ବମ୍ ସୃଷ୍ଟି ଧ୍ୱଂସ କରିଦିଏ ଗୋଟାଏ ମୁହୂର୍ତ୍ତରେ । ଆଖି ଲୁହ ଜୀବନକୁ ତିଳ ତିଳ କରି ଜାଳେ । ଏହି ଶିକ୍ଷା ଏକା ତୁମକୁ ନୁହେଁ...ଏ ଦେଶର ପ୍ରତ୍ୟେକ ଯୁବକ ଯୁବତୀ ଓ ପିତା ମାତାଙ୍କୁ । ଆମେ ଯେଉଁ ଦେଶର ସନ୍ତାନ ସେହି ଦେଶ ମା'ର ଆଇନକୁ ସନ୍ମାନ ଦେବା ଆଦେଶକୁ ପାଳନ କରିବା ଆମର କର୍ତ୍ତବ୍ୟ ନୁହେଁ କି ?

ସୁବ୍ରତ ବାବୁଙ୍କ ଆଖିରେ ଲୁହ ଦେଖାଦେଲା । ଏହି ଝିଅଟି ତେବେ କୁସୁମ ! ଯୌତୁକ ଲୋଭରେ ଅନ୍ଧପରି ସେ ଏପରି ଗୋଟିଏ ଗୁଣବତୀ ବୋହୂକୁ ହାତଛଡ଼ା କଲେ ।

କୁସୁମ ଯଥାର୍ଥ ଶିକ୍ଷା ଦେଇଛି ।

ପ୍ରକୃତରେ ଯୌତୁକ ଦ୍ୱାରା ଏ' ସଂସାରକୁ ବିକଳାଙ୍ଗ କରା-ଯାଉଛି ଏହା ଅପମାନ ନୁହେଁ, ଶିକ୍ଷା ।

ପ୍ରିୟରଞ୍ଜନ କୁସୁମୀର ହାତଧରି କହିଲେ, କୁସୁମ ଦେବୀ ମତେ କ୍ଷମା କରି ଦିଅନ୍ତୁ । ମୁଁ ଆପଣଙ୍କର ଉପଦେଶ ନିଶ୍ଚୟ ରଖିବି । ଆପଣ ମୋର ନମସ୍ୟା ।

ନମସ୍କାର କଲେ ପ୍ରିୟରଞ୍ଜନ । ଏତିକିବେଳେ ଫୁଲରାଣୀ ବାହାରି ପଡ଼ କହିଲେ ବାହ୍ୱା ବଜାରେ, ଜ୍ୱାଇଁ କିଲୋ ହଜାରେ । ବୁଝିଲ ଜ୍ୱାଇଁ ବାବୁ । ମୋ ଅପା ତୁମକୁ ସେଦିନ ଜୀବନ ଦେଇଥିଲା । ଆଜି ଦେଲା ଦିବ୍ୟଜ୍ଞାନ ; ଦକ୍ଷିଣା ଦିଅ ହୋ ବାବୁ.... ।

ପ୍ରିୟରଞ୍ଜନ କୁସୁମୀର ହାତ ପୁଣି ଧରି କହିଲେ ରାଗିବେ ନାହିଁ କୁସୁମ ଦେବୀ ! ମୁଁ ଅନୁତପ୍ତ ।

ସଖୀନା, ସୁବ୍ରତ, ହରମୋହିନୀ, ମଣିମାଳା, ଫୁଲରାଣୀ, ଠାକୁର ଗୌନ୍ତିଆ, ଅନଙ୍ଗ ଓ ଅନ୍ୟମାନେ ଏକ ସଙ୍ଗେ କହିଲେ, କୁସୁମ ଏ'ଦେଶର ଏକ ଆଦର୍ଶ ନାରୀ ।

କୁସୁମ,ପ୍ରିୟରଞ୍ଜନ ଓ ସଖୀନାକୁ ଏକତ୍ରକରି କହିଲେ, ମତେ ଥରେ ଭଉଜ ବୋଲି ଡ଼ାକତ !

ପ୍ରିୟରଞ୍ଜନ ଓ ସଖୀନା ଭଉଜ-ଭଉଜ କହି କୁସୁମୀର ପାଦତଳେ ବସି ପଡ଼ିଲେ ।

—ଭଗୀରଥି ଦାସ ବିଦାୟ ନେଲେ ନମସ୍କାର—

**ସମାପ୍ତ**









ଯୋଗାଯୋଗ ଓ ପ୍ରାପ୍ତି ସ୍ଥାନ

**ରଶ୍ମି ପ୍ରକାଶନୀ**

ବାଦାମବାଡ଼ି (ବସ୍ଷ୍ଟାଣ୍ଡ) କଟକ-୧୨



ମୁଦ୍ରଣ - ଲିପି ଓ ଲେଖା, କଲ୍ୟାଣୀ ନଗର କଟକ-୭୫୩୦୧୩